ପ୍ରାଚୀ ଗ୍ରନ୍ଥମାଳା — ପଞ୍ଚବିଂଶ




# ବଟ ଅବକାଶ



ବଳରାମ ଦାସ

ପ୍ରାଚୀ ଗ୍ରନ୍ଥମାଳା—ପଞ୍ଚବିଂଶ

ପ୍ରଧାନ ସଂପାଦକ
ଅଧ୍ୟାପକ ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି, ଏମ୍ ଏ

# ଷଷ୍ଠ ଅବକାଶ

## ବଳରାମ ଦାସ

# ବଟ ଅବକାଶ

**ବଳରାମ ଦାସ**

---

ଟୀକା ଓ ମୁଖବନ୍ଧ ସହ

**ପ୍ରାଚୀ ସମିତି ଦ୍ୱାରା**

ସଂକଳତ ଓ ପ୍ରକାଶିତ

---

ମୂଲ୍ୟ ଗୃରଅଣା ମାତ୍ର

# ମୁଖବନ୍ଧ

ଉତ୍କଳରେ ଚୈତନ୍ୟଚନ୍ଦ୍ରଙ୍କର ଯେଉଁ ପଞ୍ଚସଖା ଆବିର୍ଭୂତ ଥିଲେ ଏବଂ ଧର୍ମର ଆଲୋଚନା ଓ ପ୍ରଚାର ଦିଗରେ ସହାୟ ହୋଇ ତାହାଙ୍କର ଅନ୍ତରଙ୍ଗ ବନ୍ଧୁତା ସୂତ୍ରରେ ଆବଦ୍ଧ ଥିଲେ ସେହି ପଞ୍ଚସଖା ଆମ୍ଭମାନଙ୍କ ନିକଟରେ ଏତେଦୂର ସୁପରିଚିତ ଯେ ସେମାନଙ୍କ ସମ୍ବନ୍ଧରେ କୌଣସି ଆଲୋଚନା କଲେ ଦୀର୍ଘ ଭୂମିକା ଆବଶ୍ୟକ ହୁଏ ନାହିଁ । ସେହି ପଞ୍ଚସଖାଙ୍କ ମଧ୍ୟରୁ ଏକତମ ମହାତ୍ମା ବଳରାମ ଦାସ ଯେଉଁ ଧର୍ମତତ୍ତ୍ୱ-ସମ୍ବଳିତ ଗ୍ରନ୍ଥମାନ ପ୍ରଣୟନ କରିଅଛନ୍ତି ଆମ୍ଭମାନଙ୍କ ଆଲୋଚିତ 'ବଟ ଅବକାଶ' ଗ୍ରନ୍ଥଟି ସେମାନଙ୍କ ମଧ୍ୟରେ ଅନ୍ୟତମ । ସେହି ଗ୍ରନ୍ଥଟି ପାଠକଲେ ଜଣାଯାଏ ଯେ ଜଗନ୍ନାଥ ଯଶୋବନ୍ତ, ଅନନ୍ତ ଓ ଅଚ୍ୟୁତଙ୍କ ସହ ନିଜେ ବଳରାମ ନୀଳାଚଳ-ନାଥ ଜଗନ୍ନାଥଙ୍କର ମଧ୍ୟ ପଞ୍ଚସଖା ଅଟନ୍ତି । ଏ ବିଷୟ ଅଚ୍ୟୁତାନନ୍ଦଙ୍କ ଜୀବନୀରେ ଆମ୍ଭେମାନେ ବିଶଦ ଭାବରେ ଆଲୋଚନା କରିଅଛୁଁ । ସେହି ପଞ୍ଚସଖା ସେମାନଙ୍କ ଜୀବନରେ ଯେଉଁ ଅଲୌକିକତା ପ୍ରଦର୍ଶନ କରିଅଛନ୍ତି ସେଥିରେ ବିସ୍ମିତ ହେବାର

ସେପରି କୌଣସି କାରଣ ନାହିଁ । ବିଚ୍ଛ-ଅବକାଶ ଗ୍ରନ୍ଥରେ ବର୍ଣ୍ଣିତ ଜଗନ୍ନାଥଙ୍କ ଐଶ୍ୱର୍ଯ୍ୟର ପ୍ରସଙ୍ଗରେ ମହାତ୍ମା ବଳରାମ ରାଜା ପ୍ରତାପରୁଦ୍ରଙ୍କ ସମ୍ମୁଖରେ ଜଗନ୍ନାଥଙ୍କ ସହ ତାଙ୍କର ଲଙ୍କାଦର୍ଶନ ବୃତ୍ତାନ୍ତ ଯେପରି ଭାବରେ ପ୍ରକାଶ କରିଅଛନ୍ତି, ତାହା ଏକା ରାଜା ପ୍ରତାପରୁଦ୍ର କାହିଁକି, ପ୍ରତ୍ୟେକ ସାଧାରଣ ମାନବ ପ୍ରାଣରେ ବିସ୍ମୟ ତଥା ଭକ୍ତିର ଧାରା ଖେଳାଇ ଦେବ । ହେତୁବାଦ ଦିଗରୁ ଏ ପ୍ରସଙ୍ଗର ବିଚାର କଲେ ଏହା ଅସାର ଗାଲଗଳ୍ପବତ୍ ପ୍ରତୀୟମାନ ହୋଇପାରେ, କିନ୍ତୁ ମନେ ରଖିବାକୁ ହେବ ଯେ, ଏପରି ପ୍ରତୀତି ପୋଷଣର ଫଳରେ ଭଗବାନଙ୍କ ଅଘଟନ-ଘଟନ-ପଟୀୟସୀ ଶକ୍ତି ଉପରେ ଅବିଶ୍ୱାସ ତଥା ଅନାସ୍ଥା ସ୍ଥାପନ କରିବାକୁ ପଡ଼ିବ । ତେଣୁ ଏହି ଦୃଷ୍ଟିରେ ଭଗବତ୍ ଶକ୍ତିର—ବିଶ୍ୱ ଚୈତନ୍ୟର କଳନା କରିବା ଆମ୍ଭମାନଙ୍କ କ୍ଷୁଦ୍ର ଶକ୍ତି ପକ୍ଷରେ ସୁଦୂର ପରାହତ । ଏହା କେବଳ ହେତୁବାଦୀ ତଥା ସଂଶୟବାଦୀମାନଙ୍କ ମୁଖରେ ଶୋଭା ପାଇପାରେ ।

ମହାତ୍ମା ବଳରାମ ଚୈତନ୍ୟଚନ୍ଦ୍ରଙ୍କର କେବଳ ଯେ ଅନ୍ତରଙ୍ଗ ସଖା ଓ ମତାନୁବର୍ତ୍ତୀ ଥିଲେ ତାହା ନୁହେଁ । ପରନ୍ତୁ ରାଜା ପ୍ରତାପରୁଦ୍ରଙ୍କର ପରମଗୁରୁ

ଯୋଗୀ ଜଗନ୍ନାଥଙ୍କର ଦୀକ୍ଷାଗୁରୁ ଏବଂ ଉତ୍କଳୀୟ ଜନସାଧାରଣ ତଥା ବହୁ ଉପାସକମାନଙ୍କର ନତ୍ୟ ନମସ୍ୟ ଥିଲେ । ଯଶୋବନ୍ତଙ୍କ ସ୍ୱରୋଦୟ, ବଳରାମଙ୍କ ବେଦାନ୍ତସାର ଗୁପ୍ତ ଗୀତା, ଦିବାକରଙ୍କ ଜଗନ୍ନାଥ ଚରିତାମୃତ, ଈଶ୍ୱର ଦାସଙ୍କ ଚୈତନ୍ୟ-ଭାଗବତ ଆଦି ଉତ୍କଳୀୟ ଗ୍ରନ୍ଥମାନ ଅନୁଶୀଳନ କଲେ ଆମ୍ଭମାନଙ୍କର ଏହି ଉକ୍ତିର ସାରବତ୍ତା ଉପଲବ୍ଧ ହୁଏ । ବଙ୍ଗୀୟ ବୈଷ୍ଣବ ଦେବକୀନନ୍ଦନ ଦାସଙ୍କ ନମ୍ନୋଦ୍ଧୃତ ଉକ୍ତିରେ ମଧ୍ୟ ଏହା ପ୍ରତିଧ୍ୱନିତ ହୋଇଅଛି । ଯଥାଃ—

"ବନ୍ଦ ଉଡ଼ିଆ ବଳରାମ ଦାସ ମହାଶୟ
ଜଗନ୍ନାଥ ବଳରାମ ଯାର ବଶ ହୟ ।"

ବହୁ-ଅବକାଶର କ୍ଷୁଦ୍ର କଳେବର ମଧ୍ୟରେ ମହାତ୍ମା ବଳରାମ ନିଜର ଯେଉଁ ପରିଚୟ ଟିକକ ପ୍ରଦାନ କରିଅଛନ୍ତି ସେଥିରୁ ଜଣାଯାଏ ଯେ ତାହାଙ୍କ ପିତାଙ୍କର ନାମ ସୋମନାଥ ଥିଲା ଏବଂ ସେ ଶୂଦ୍ର-କୁଳରେ ଜାତ ହୋଇଥିଲେ । ବଳରାମଙ୍କ ପ୍ରଣୀତ ଜଗମୋହନ ରାମାୟଣର ବର୍ଣ୍ଣନାରୁ ମିଳେ ଯେ, ସୋମନାଥ ତତ୍‌କାଳୀନ ଉତ୍କଳୀୟ ରାଜାଙ୍କର ମନ୍ତ୍ରୀ ଥିଲେ । ଯଥାଃ —

"ମହାପାତ୍ର ସୋମନାଥ ଦାସର ତନୟ

।

ବଳରାମ ଦାସ ଗୀତ ଯେ ଅମୃତ ମଧୁ ।"
( ଉତ୍ତର କାଣ୍ଡ )

"ମହାମନ୍ତ୍ରୀବର ସୋମନାଥ ମହାପାତ୍ର ।
ବଳରାମ ଦାସ ମୁଁ ଯେ ତାହାଙ୍କର ପୁତ୍ର ।"
( ଲଙ୍କାକାଣ୍ଡ )

ଗୁପ୍ତଗୀତାର ଅନ୍ୟ ଏକ ବର୍ଣ୍ଣନା ଅନୁସାରେ ତାହାଙ୍କ ମାତାଙ୍କର ନାମ ଜମ୍ବୁଦେବୀ ଥିବାର ଜଣାଯାଏ । ଯଥା:—

"ପ୍ରତାପରୁଦ୍ର ନାମେ ହେବ ରାଯ୍ୟ । କହଇ ତୋତେ ସେକାଳ ବିଷୟ
ସୋମନାଥ ନାମ ଶୂଦ୍ର କୁଳର । ଅନିରୁଦ୍ଧ ଜାତ ତାହାର ଘର
ଜମ୍ବୁ ନାମେଣ ତାହାର ଭାରିଯା । ଅନିରୁଦ୍ଧ ହେବ ତାର ତନୁଜା
ତା ସୁତ ନାମ ବଳରାମ ଦାସ । ଗୁପତ ଗୀତା ଅଧ୍ୟାୟେ ପ୍ରକାଶ ।"

ଅନ୍ୟାନ୍ୟ ସମସାମୟିକ ଗ୍ରନ୍ଥମାନଙ୍କ ମଧ୍ୟରୁ ଦାର୍ଢ୍ୟତାଭକ୍ତିରସାମୃତ ପାଠ କଲେ ଜଣାଯାଏ ଯେ ମହାତ୍ମା ବଳରାମଙ୍କ ବାସସ୍ଥାନ ପୁରୁଷୋତ୍ତମ ଏବଂ ସେ ସେଠାରେ ବିବାହାଦି କରି ସପରିବାର ବସବାସ କରୁଥିଲେ । ଯଥା:—

"ଭକତ ଜନ ମଧ୍ୟେ ସାର । ମହିମା ଅପାର ଅପାର
ନାମ ତା ବଳରାମ ଦାସ । ମହାନ୍ତ ସୋମନାଥ ଶିଷ୍ୟ
ପୁରୁଷୋତ୍ତମେ ତାର ଘର । କୁଟୁମ୍ବ ଘେନ ନିରନ୍ତର ।"

ଏଥିରୁ ଅନୁମିତ ହୁଏ ଯେ ମହାପୁରୁଷ ବଳରାମ

ପ୍ରଥମେ ଗୃହୀ ବୈଷ୍ଣବ ଥିଲେ ଏବଂ ପରେ ଭକ୍ତିର ଚରମ କୋଟରେ ବହାର କର ବୈଷ୍ଣବ ରୂପେ ନଜର ମାହାତ୍ମ୍ୟ ଅର୍ଜନ କରଥିଲେ । ଏହ କେତେକ ବୃତ୍ତାନ୍ତ ବ୍ୟତୀତ ତାଙ୍କ ଜୀବନର ଅନ୍ୟାନ୍ୟ ବ୍ବରଣମାନ ବର୍ତ୍ତମାନ ନାନା କାରଣରୁ ଏ ସ୍ଥଳରେ ପ୍ରକାଶ କର୍‌ଯାଇ ପାରୁ ନାହିଁ ।

ବଳରାମ କେଉଁ ସମୟରେ ଉତ୍କଳରେ ଆବର୍ଭୂତ ହୋଇ କେଉଁ ସମୟରେ ଅନ୍ତର୍ହିତ ହୋଇଥିଲେ ବର୍ତ୍ତମାନ ତାହା ଅଲୋଚ୍ୟ । ତଙ୍କ ପ୍ରଣୀତ ଅନେକାନେକ ଗ୍ରନ୍ଥରୁ ଜଣାଯାଏ ଯେ ତାହାଙ୍କ ସମସାମୟିକ ରାଜା ପ୍ରତାପରୁଦ୍ର ଉତ୍କଳରେ ରାଜପଣ କରୁଥିଲେ । ଆହୁର ମଧ ଏହା ସର୍ବବାଦ-ସମ୍ମତ ଯେ ଉତ୍କଳର ପଞ୍ଚସଖାଙ୍କ ମଧରେ ସେ ବୟସରେ ସର୍ବ ଜ୍ୟେଷ୍ଠ ଥିଲେ,—ଏପର କ ସ୍ୱୟଂ ଚୈତନ୍ୟଙ୍କଠାରୁ ମଧ ବର୍ଷୀୟାନ ଥିଲେ । ଆମ୍ଭମାନଙ୍କ ମତରେ ଉତ୍କଳର ସ୍ୱାଧୀନ ଗଜପତ ରାଜା ପ୍ରତାପରୁଦ୍ର ୧୪୯୭ ରୁ ୧୫୪୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କର ଥିଲେ । ସ୍ୱୀୟ ବେଦାନ୍ତସାର ଗୁପ୍ତଗୀତାର ପ୍ରାରମ୍ଭ ଭାଷଣରେ ବଳରାମ କହଅଛନ୍ତ ଯେ ରାଜା ପ୍ରତାପ-ରୁଦ୍ରଙ୍କ ୧୭ ଅଙ୍କ ମକର ମାସ ଶୁକ୍ଳପକ୍ଷ ଏକାଦଶୀ ଦନ

ସେ ସେହି ଗ୍ରନ୍ଥ ରଚନା ସମାପନ କରିଥିଲେ । ଉତ୍କଳୀୟ ନରପତିମାନଙ୍କ ଅଙ୍କ ଗଣନା ଅନୁସାରେ ପ୍ରତାପରୁଦ୍ରଙ୍କ ୧୭ଶ ଅଙ୍କ ତାହାଙ୍କ ରାଜତ୍ୱର ଚତୁର୍ଦ୍ଦଶ ବର୍ଷରେ ପଡୁଅଛି । ପୂର୍ବରୁ କଥିତ ହୋଇଅଛି ଯେ ପ୍ରତାପରୁଦ୍ରଙ୍କ ସିଂହାସନାରୋହଣ ୧୪୯୭ ଖ୍ରୀଷ୍ଟାବ୍ଦରେ ସଂଘଟିତ ହୋଇଥିଲା । ବର୍ତ୍ତମାନ ସହଜରେ କୁହାଯାଇ ପାରେ ଯେ ତାହାଙ୍କ ରାଜତ୍ୱର ଚତୁର୍ଦ୍ଦଶ ବର୍ଷ ଅର୍ଥାତ୍ ୧୫୧୦ ଖ୍ରୀଷ୍ଟାବ୍ଦରେ ଗୁପ୍ତଗୀତାର ରଚନା ଶେଷ ହୋଇଥିବା ସୁନିଶ୍ଚିତ ।

ବଳରାମଙ୍କ ଅନ୍ୟତମ କୃତି ଜଗମୋହନ ରାମାୟଣ ରଚିତ ହୋଇ ସାରିଲା ବେଳକୁ ତାହାଙ୍କର ବୟସ ୩୦ ବର୍ଷ ହୋଇଥିଲା ବୋଲି ସେହି ଗ୍ରନ୍ଥରେ ଲିଖିତ ଅଛି । ପୁନଶ୍ଚ ସେହି ରାମାୟଣ ଓ ଗୁପ୍ତଗୀତା ଏହି ଦୁଇଗ୍ରନ୍ଥର ତୁଳନା କଲେ ଗୁପ୍ତଗୀତା ଗ୍ରନ୍ଥଟି ପରବର୍ତ୍ତୀ କାଳର ରଚନା ବୋଲି ସ୍ପଷ୍ଟ ପ୍ରତୀତ ହୁଏ । ଉଭୟ ଗ୍ରନ୍ଥର ଏହି ରଚନା କାଳ ବ୍ୟବଧାନକୁ ୫ ବର୍ଷ ବୋଲି ଧରି ନେଲେ ଗୁପ୍ତଗୀତା ରଚନା ଶେଷରେ ବଳରାମଙ୍କର ବୟସ ୩୫ ବର୍ଷ ହୋଇ ଥିବାର ଅନୁମିତ ହୁଏ । ପୂର୍ବରୁ ସ୍ଥିର ହୋଇଅଛି ଯେ ପ୍ରତାପରୁଦ୍ରଙ୍କ ରାଜତ୍ୱର ଚତୁର୍ଦ୍ଦଶ ବର୍ଷରେ ଅର୍ଥାତ୍

୧୫୧୦ ଖ୍ରୀଷ୍ଟାବ୍ଦରେ ଗୁପ୍ତଗୀତାର ରଚନା ଶେଷ ହୋଇଥିଲା । ତେଣୁ ବର୍ତ୍ତମାନ ଅକ୍ଲେଶରେ କୁହାଯାଇ ପାରେ ଯେ ମହାତ୍ମା ବଲରାମ ( ୧୫୧୦—୭୫ ) ୧୪୭୫ ଖ୍ରୀଷ୍ଟାବ୍ଦରେ ଉତ୍କଳଖଣ୍ଡରେ ଆବିର୍ଭୂତ ହୋଇଥିଲେ । ନିର୍ଗୁଣ-ମାହାତ୍ମ୍ୟର ମୁଖବନ୍ଧରେ ମଧ୍ୟ ବଲରାମଙ୍କର ଏହି ଅବିର୍ଭାବ କାଳ ପ୍ରତିପାଦିତ ହୋଇଅଛି ।

ଷଷ୍ଠ-ଅବକାଶରେ ପ୍ରତିପାଦିତ ବିଷୟସୂଚିର ସଂକ୍ଷିପ୍ତ ସୂଚନା ପାଠକମାନଙ୍କର ଅବଗତି ନିମିତ୍ତ ଏଠାରେ ଉଲ୍ଲେଖ କରି ଆମ୍ଭେମାନେ ଆମ୍ଭମାନଙ୍କ ବକ୍ତବ୍ୟ ସାଙ୍ଗ କରିବୁଁ । ଏକଦା ଭଣ୍ଡାରଘରେ ଜଗନ୍ନାଥଙ୍କ ସ୍ୱର୍ଣ୍ଣ ଝୁମ୍ପା ନ ଦେଖି ପଣ୍ଡା ପଡ଼ିହାରୀମାନେ ତାହା ଅପହୃତ ହୋଇଥିବାର ମନେ କଲେ ଓ ନାନା ଦିଗରେ ଅନୁସନ୍ଧାନ ଆରମ୍ଭ କରି ଶେଷରେ ରାଜା ପ୍ରତାପରୁଦ୍ରଙ୍କୁ ଏ ସମ୍ବାଦ ଜଣାଇଲେ । ପରମଭକ୍ତ ବଲରାମ ଏ ସମ୍ବାଦ ଶ୍ରବଣରେ ନିଜ ମଠରୁ ଜଗନ୍ନାଥଙ୍କ ସ୍ୱର୍ଣ୍ଣ ଝୁମ୍ପିଟି ନେଇ ପାଳିଆ ପଣ୍ଡାଙ୍କୁ ଅର୍ପଣ କଲେ । କ୍ରମେ ଏ ସମ୍ବାଦ ରାଜା ପ୍ରତାପଙ୍କର କର୍ଣ୍ଣଗୋଚର ହେଲା ଏବଂ ଜନ ସାଧାରଣଙ୍କ ନିକଟରେ ବଲରାମ ଚୋର ରୂପେ ବିବେଚିତ ହେଲେ । ସନ୍ନ୍ୟାସୀ ବଲରାମଙ୍କ

ତତ୍ପରେ ହୀନ ଚୌର୍ଯ୍ୟ ବୃତ୍ତି ଦର୍ଶନ କରି ପ୍ରତାପ ଯଥେଷ୍ଟ ଦୁଃଖିତ ହେଲେ ଏବଂ ତାହାଙ୍କ ଉପରେ ବିରକ୍ତି ପ୍ରକାଶ ପୂର୍ବକ ଭବିଷ୍ୟତରେ ଏପରି ହୀନ ଜୀବିକା ଅବଲମ୍ବନ ନ କରିବାକୁ ଏବଂ ଅଭାବ ହେଲେ ଯାଚକ ଭାବରେ ତାଙ୍କର ଦ୍ୱାରସ୍ଥ ହେବାକୁ ତାହାଙ୍କୁ ଅନୁରୋଧ କଲେ ।

ଏହି ମିଥ୍ୟା ନିନ୍ଦାରେ ବଳରାମ ନୀରବ ହୋଇ ରହିପାରିଲେ ନାହିଁ । ନିଜ ସ୍କନ୍ଧରୁ ଏହି ଚୌର୍ଯ୍ୟବୃତ୍ତି ରୂପ କଳଙ୍କଭାରର ଅପସାରଣ ନିମିତ୍ତ ସେ ରାଜାଙ୍କ ସମ୍ମୁଖରେ ନିବେଦନ କଲେ ଯେ ଗତ ରଜନୀରେ ନୀଳାଚଳନାଥ ଜଗନ୍ନାଥ ବଟ ତଳେ ବିଜୟ କରିଥିଲେ । ସେଠାରୁ ବିଭୀଷଣର ପ୍ରତିଜ୍ଞା ପାଳନ ଏବଂ ନିଜର ସତ୍ୟ ରକ୍ଷା ନିମିତ୍ତ ଲଙ୍କା ଯାତ୍ରା କରିଥିଲେ । ସେ ଲଙ୍କା ଦର୍ଶନ ନିମିତ୍ତ ଜଗନ୍ନାଥଙ୍କ ଚରଣରେ ଅଳି କରିବାରୁ ଭକ୍ତର ଅଧୀନ ଭକ୍ତବତ୍ସଳ ପ୍ରଭୁ ତାହାଙ୍କ ହସ୍ତରେ ସ୍ୱର୍ଣ୍ଣଝଂଝା-ଦେଇ କହିଲେ ଯେ ଏହି ସ୍ୱର୍ଣ୍ଣଝଂଝା ହସ୍ତରେ ଧାରଣ କରି ତାଙ୍କର ଅନୁଧାବନ କଲେ ସେ ଅକ୍ଳେଶରେ ତାଙ୍କର ଲଙ୍କା ଦର୍ଶନ ଲାଳସ ଚରିତାର୍ଥ କରି ପାରିବେ । ଜଗନ୍ନାଥଙ୍କର ଏହି ଆଦେଶ ଶିରୋଧାର୍ଯ୍ୟ କରି ସେ ସ୍ୱର୍ଣ୍ଣଝଂଝା-ହସ୍ତରେ

ତାହାଙ୍କର ଅନୁସରଣ କରି ଲଙ୍କା ଦର୍ଶନ କଲେ । ସେଠାରେ ବିଭୀଷଣ ପ୍ରଭୁଙ୍କର ଦର୍ଶନ କରି ଦେବାଙ୍ଗ ବସ୍ତ୍ର, କଳା ମଲ୍ଲୀଫୁଲର ହାର ଓ ମୁକ୍ତାମାଳ ପ୍ରଭୃତି ତାହାଙ୍କୁ ଉପହାର ଦେଇ ପ୍ରଣାମ କଲେ ଏବ ଜଗନ୍ନାଥ ବିଭୀଷଣଙ୍କ ହସ୍ତରେ କ୍ଷୁରି ଖଣ୍ଡା ଇତ୍ୟାଦି ପ୍ରଦାନ କଲେ । ଲଙ୍କାରୁ ପ୍ରଭୁଙ୍କ ସହ ପ୍ରତ୍ୟାବର୍ତ୍ତନ କରି ସେ ତାଙ୍କର ମଠରେ ପ୍ରବେଶ କଲେ ଏବଂ ଭାବରେ ଭୋଳ ହୋଇ ପ୍ରଭୁଙ୍କ ଦ୍ରବ୍ୟ ଅର୍ଥାତ୍ ସ୍ୱର୍ଣ୍ଣଝୁଣ୍ଟି ତାଙ୍କଠାରେ ଥିବା କଥା ଭୁଲିଗଲେ । ଅର୍ଦ୍ଧ ରଜନୀରେ ଜଗନ୍ନାଥ ଦକ୍ଷିଣଦ୍ୱାର ଦେଇ ମନ୍ଦିରରେ ପ୍ରବେଶ କଲେ । ପ୍ରଭାତ ଅବକାଶର ସମୟ ଉପସ୍ଥିତ ହୁଅନ୍ତେ ଯେତେ-ବେଳେ ଦ୍ୱାର ଉନ୍ମୁକ୍ତ ହେଲା ସେତେବେଳେ ରତ୍ନ ଝୁଣ୍ଟିର ଅଦର୍ଶନରେ ଗୃହଆଡ଼େ ଆନ୍ଦୋଳନର ସୃଷ୍ଟି ହେଲା ଏବଂ ସେ ଏହି ସମ୍ବାଦ ପାଇ ନିଜ ମଠରୁ ତାହା ଆଣି ଭଣ୍ଡାରରେ ପ୍ରଦାନ କଲେ ।

ରାଜା ପ୍ରତାପରୁଦ୍ର ଏ ଘଟନା ଶ୍ରବଣରେ ଯତ୍-ପରୋନାସ୍ତି ବିସ୍ମିତ ହେଲେ ଏବଂ ଜଗନ୍ନାଥଙ୍କୁ ପ୍ରଦତ୍ତ ଦେବାଙ୍ଗବସ୍ତ୍ର, କଳାମଲ୍ଲୀହାର ଓ ମୁକ୍ତାମାଳ ପ୍ରଭୃତି ବିଭୀଷଣଙ୍କ ଉପହାର ଯେତେବେଳେ ସ୍ୱଚକ୍ଷୁରେ ଦର୍ଶନ କଲେ ସେତେବେଳେ ସେ ନିଜେ ଓ ତଦ୍ରତ୍ୟ ଜନ-

ସାଧାରଣ ବସ୍ତୁରେ ନିର୍ବାକ ନିଷ୍ପନ୍ନ ହୋଇଗଲେ । ପରେ ରାଜାଙ୍କ ଆଦେଶରେ ସେହି ଉପହାର ଦ୍ରବ୍ୟମାନ ଜଗନ୍ନାଥଙ୍କ ଭଣ୍ଡାରରେ ରକ୍ଷିତ ହେଲା । ଏହି ବୃତ୍ତାନ୍ତ ଶ୍ରବଣ ଓ ଉପହାର ସାମଗ୍ରୀର ପ୍ରତ୍ୟକ୍ଷ ଦର୍ଶନରେ ବଳରାମଙ୍କ କଳଙ୍କ-ଭାର ଅପସାରିତ ହୋଇଗଲା ଓ ଜନସାଧାରଣରେ ତାଙ୍କର ଅଲୌକିକ ମାହାତ୍ମ୍ୟ ପ୍ରଚାରିତ ହେଲା । ଏହିଠାରେହିଁ ବଟଅବକାଶ ଗ୍ରନ୍ଥର ସମାପ୍ତି ସୂଚିତ ହୋଇଅଛି । ଗ୍ରନ୍ଥର ଆରମ୍ଭରେ ମଧ୍ୟରେ ଓ ଶେଷରେ କବି ଜଗନ୍ନାଥଙ୍କ ନାମୋଚ୍ଚାରଣ, ଗୁଣଗାନ ପ୍ରଭୃତି କରି ତାଙ୍କ ପ୍ରତି ନିଜର ପ୍ରଗାଢ଼ ଭକ୍ତି ଥିବାର ପ୍ରକାଶ କରିଅଛନ୍ତି ।

ଗ୍ରନ୍ଥର କ୍ଷୁଦ୍ର କଳେବର ଭିତରେ ଯେତେ ଦେବ ଦେବୀଙ୍କର ନାମୋଲ୍ଲେଖ ହୋଇଥିବାର ଦେଖାଯାଏ, ସେ ସମସ୍ତ ଏହି ଉତ୍କଳୀୟ ନାମ ଅଟେ । ସେଥିରୁ ଏତିକିମାତ୍ର ଅନୁମାନ କରାଯାଇପାରେ ଯେ ଉତ୍କଳରେ ବୈଷ୍ଣବ ଧର୍ମର ସ୍ରୋତ ପ୍ରବାହିତ ହେବାର ବହୁ ପୂର୍ବରୁ ଶକ୍ତି ଉପାସନା ପ୍ରବଳ ଭାବରେ ପ୍ରଚଳିତ ଥିଲା । ପରବର୍ତ୍ତୀ ଯୁଗରେ ଯେତେବେଳେ ବୈଷ୍ଣବ ଧର୍ମ ଅତି ପ୍ରବଳ ହୋଇ ଉଠିଲା ସେତେବେଳେ ମଧ୍ୟ ଏହି ଉତ୍କଳ ଖଣ୍ଡରୁ ଶକ୍ତି ଉପାସନାର ଅସ୍ତିତ୍ୱ ଏକାବେଳକେ ଲୋପ କରାଯାଇ ପାରିଲା ନାହିଁ, ତାହାର ଫଳସ୍ୱରୂପ

ବିଭିନ୍ନ ଶକ୍ତିପୀଠର ଦେବଦେବୀଗଣ ପରମ ବୈଷ୍ଣବୀ ମୂର୍ତ୍ତି ରୂପେ ବିଷ୍ଣୁ ଉପାସକ ମାନଙ୍କର ଉପାସ୍ୟ ଦେବତାରୂପେ ପରିଣତ ହେଲେ । ସ୍ଥୁଳତଃ ଶାକ୍ତ-ବୈଷ୍ଣବ ଏହି ଉଭୟ ଧର୍ମାବଲମ୍ବୀମାନଙ୍କର ଏକ ମଧୁର ସମନ୍ୱୟ ଯୁଗର ଆବିର୍ଭାବ ହେଲା । ତେଣୁ ଆଜି ମଧ୍ୟ ଆମ୍ଭେମାନେ ଦେଖିବାକୁ ପାଉ ଯେ ଉତ୍କଳର ବୈଷ୍ଣବ-ମାନେ ବିଷ୍ଣୁ ଉପାସକ ହେଲେହେଁ କୌଣସି ଏକ ନିର୍ଦ୍ଦିଷ୍ଟ ସମୟରେ ଶକ୍ତି ପୂଜାରେ ମନ ବଳାଇଥାନ୍ତି ଏବଂ ଶାକ୍ତମାନେ ମଧ୍ୟ ସମୟ ସମୟରେ ବୈଷ୍ଣବ ଧର୍ମରେ ଆସ୍ଥା ସ୍ଥାପନ କରିଥାନ୍ତି । ଦିନେ ଯେ ଏହି ଉତ୍କଳ ଖଣ୍ଡରେ ଶକ୍ତିମୟୀ ମା'ଙ୍କର ଉଦ୍‌ବୋଧନ ଗୀତିକା ପୁରପଲ୍ଲୀ ସର୍ବତ୍ର ତାର ମଧୁମୟ ଝଙ୍କାର ତାଳ ଦେଇଥିଲା ଏବଂ ମୃଦୁମନ୍ଦ ସଞ୍ଚରରେ ବୈଷ୍ଣବ ଧର୍ମ ଉପରେ ନିଜର ପ୍ରଭାବ ପକାଇ ପାରିଥିଲା, ଏ ବିଷୟରେ କୌଣସି ସନ୍ଦେହ ନାହିଁ । ଅଦ୍ୟାପି ମଧ୍ୟ ଉତ୍କଳର ବିରଜା, ବିମଳା, ଚର୍ଚ୍ଚିକା ଓ ଶାରଦା ଆଦି ଶକ୍ତି ପୀଠମାନ ଶକ୍ତି ଉପାସନାର ମୂକ—ସାକ୍ଷୀରୂପେ ରହିଅଛି ।

କେତେକ ତଥାକଥିତ ସାହିତ୍ୟିକ ମତ ପୋଷଣ କରନ୍ତି ଯେ ବଳରାମ ପ୍ରମୁଖ ଉତ୍କଳର ପଞ୍ଚସଖା ଚୈତନ୍ୟଙ୍କ ବୈଷ୍ଣବ ଦର୍ଶନର ମତ ଯଥାଯଥ ଭାବରେ

ଗ୍ରହଣ କରିପାରି ନ ଥିବେଲ । ସେମାନଙ୍କର ଏ ଧରଣର ମନ୍ତବ୍ୟ ପ୍ରକାଶ ଅତି ବିଷମ, କାରଣ ଚୈତନ୍ୟଚନ୍ଦ୍ର ଯେଉଁ ମାଧ୍ୱାଚାର୍ଯ୍ୟ ପ୍ରବର୍ତ୍ତିତ ବୈଷ୍ଣବ ଧର୍ମର ବହୁଳ ପ୍ରଚାର କରିଥିଲେ ଉତ୍କଳଖଣ୍ଡରେ ବହୁପୂର୍ବରୁ ସେହି ଧର୍ମ ପ୍ରଚଳିତ ଥିଲା ଏବଂ ମହାପୁରୁଷ ବଳରାମ ସେହି ଧର୍ମମାର୍ଗର ପଥିକ ଥିଲେ । ତେଣୁ ସେ ଚୈତନ୍ୟଙ୍କ ଧର୍ମମତ ହୃଦୟଙ୍ଗମ କରିପାରି ନ ଥିଲେ ବୋଲି କହିବା ଏକଦେଶ-ଦର୍ଶିତା ଭିନ୍ନ ଅନ୍ୟକିଛି ହୋଇ ନ ପାରେ । ମହାତ୍ମା ବଳରାମ ପରମ ବୈଷ୍ଣବ ତଥା ଜ୍ଞାନମିଶ୍ରା ଭକ୍ତିର ଉପାସକ ଥିଲେ ଏବଂ କବୀର, ନାନକ, ତୁଳସୀ ଦାସ, ଗୁରୁ ଗୋବିନ୍ଦ, ତୁକାରାମ ଓ ଜ୍ଞାନଦାସ ପ୍ରଭୃତି ମହାପୁରୁଷଙ୍କ ସଦୃଶ ଜ୍ଞାନମିଶ୍ରା ପ୍ରୀତିଭକ୍ତି-ରସରେ ବିଭୋଳ ଥିଲେ ।

ପ୍ରକାଶ ଥାଉକି ଏହି ଗ୍ରନ୍ଥଟି ଦାଣ୍ଡି ବୃତ୍ତରେ ଲିଖିତ । ବିଷ୍ଣୁଗର୍ଭ ପୁରାଣ ପରେ ପ୍ରାଚୀସମିତି ଦାଣ୍ଡି-ବୃତ୍ତର ଏହି ପୁସ୍ତକ ପ୍ରକାଶ କଲେ । ଆଶାକରୁଁ ପାଠକ ବୃନ୍ଦ ଏହି ବୃତ୍ତର ପାଠରେ ଆନନ୍ଦ ଉପଲବ୍ଧି କରିବେ । ଆଧୁନିକ ଯୁଗର ପାଠକମାନଙ୍କ ସମକ୍ଷରେ ଉତ୍କଳ ପ୍ରାଚୀନ ସାହିତ୍ୟର ଏହି ବିଶେଷତ୍ୱଟି ଉପସ୍ଥାପିତ କରି ପ୍ରାଚୀ ସମିତି ତାହାର ଉଦ୍ଦେଶ୍ୟ କିଛିତ୍ ପରିମାଣରେ

ସାଧନ କରିଅଛୁ । ସାରଳା ମହାଭାରତ, ଅଚ୍ୟୁତାନନ୍ଦଙ୍କ ହରିବଂଶ ଓ ବଳରାମଙ୍କ ରାମାୟଣ ପ୍ରଭୃତି ଯଥାଯଥ ଭାବରେ ପ୍ରକାଶିତ କରିବାରେ ସମିତି ଯତ୍ନ କରୁଅଛୁ । ଖୋର୍ଦ୍ଧା ଅଞ୍ଚଳରୁ ପ୍ରାପ୍ତ ଦୁଇଟି ପୋଥି ସାହାଯ୍ୟରେ ଏହି ଗ୍ରନ୍ଥ ସଂକଳିତ ହୋଇଅଛି । ପରେ ଏହି ଗ୍ରନ୍ଥର ଅନ୍ୟ ପୋଥିମାନ ପ୍ରାପ୍ତ ହେଲେ ସମିତି ସନ୍ଦେହସ୍ଥ ସ୍ଥଳମାନଙ୍କରେ ସଂଶୋଧନ କରିବାର ଇଚ୍ଛା ପୋଷଣ କରିଅଛୁ ।



# ଷଠ ଅବକାଶ

---

ଜୟ ଜୟ ଜଗନ୍ନାଥ ନୀଳାଦ୍ରି ଚୂଡ଼ାମଣି ।
ଭୃତ୍ୟଜନମାନଙ୍କର ହୃଦୟ-ପଦ୍ମକୁ ଦିନମଣି । ୧ ।
ନରକ-ଖଣିକ ଯାର ନାମ ଅଟଇ ନିଶ୍ରୁତି ।
ଯହିଁ ବେଦଶାସ୍ତ୍ର ଶୁଣାଇବାକୁ ବ୍ରାହ୍ମଣ କୁଶପାଣି । ୨ ।
ଗୀତ ଗାଇବାକୁ ଯହିଁ ଶାରଦା ଗାୟେଣୀ ।
ଯୋଗ ସାଧିବାକୁ ଯହିଁ ଯୋଗୀ ଶୂଳପାଣି । ୩ ।
ପଣ୍ଡିତ ଲେଖାରେ ବୃହସ୍ପତିଙ୍କି ଯହିଁ ଗଣି ।
ରତ୍ନାକର-ନନ୍ଦନୀ ଯାହାର ଅଟନ୍ତି ପାଟରାଣୀ । ୪ ।
ଯହିବର କଟକେ ଯାହାର ନବର ।
ଛପନାକୋଟି ଜୀବଜନ୍ତୁଙ୍କ ପଡ଼ିଦାତା ଈଶ୍ୱର । ୫ ।
ଅଷ୍ଟନିଧି ମୂଲେ ବାବନ କୋଟି ଭଣ୍ଡାର ।
ଚତୁର୍ବର୍ଗ ଜୂର ଯାର ହେଉଛି ନିରନ୍ତର । ୬ ।
ସୁନ୍ଦର ପଣକୁ ଯାର କାମଦେବ ଦାସ ।
ଯେବଣ ଆଜ୍ଞାରେ ଚନ୍ଦ୍ର ସୂର୍ଯ୍ୟ କରନ୍ତି ରାତି ଯେ ଦିବସ ॥
ଶ୍ରୀପୁରୁଷୋତ୍ତମ ବୋଲିଣ ଯେବଣ ସେ ନାମ ।
ଅସଂଖ୍ୟ ଲୋକଙ୍କର ଆପେ ବିଶ୍ରାମ । ୮ ।
ଯେଣୁ କରି ମୋହୋର ଯେ ବଳିଲା ସାହସ ।

ସୋମନାଥ ତନୟ ମୁଁ ବଳରାମ ଦାସ । ୯ ।
ଅଚମ୍ବିତ କଥା ମୁଁ ଯେ ଶୁଣୁଥାଇଁ ମନେ ।
ମନୁଷ୍ୟ ଦେହରେ ଲଙ୍କା ଦେଖିବି କେସନେ । ୧୦ ।
ତ୍ରେତୟା ଯୁଗରେ ରାମ ଅବତାର ।
ଲଙ୍କା କଟକାଇ ଶ୍ରୀରାମଚନ୍ଦ୍ର ଠାକୁର । ୧୧ ।
ସେ ଲଙ୍କାଗଡ଼ ଦେଖିବି, ଦେଖିବି ବିଭୀଷଣ ।
ଜନ୍ମର ସୁଫଳ ମୋର ଲଭିବା କାରଣ । ୬ ।
ଏମନ୍ତ ବିଚାରେନ୍ତ ତୁମ୍ଭେ ଦୟାନିଧି ।
ମନବାଞ୍ଛା ମୋର ଯେ କାରଣ କଲ ସିଦ୍ଧି । ୧୩ ।
ମୁଁ ଲଙ୍କାଗଡ଼ ଦେଖିଲି, ଦେଖିଲି ବିଭୀଷଣ ।
ଏବେ ଯେ ମହାପ୍ରଭୁ ମୋତେ ପଡ଼ୁଛି କଷଣ । ୧୪ ।
ଉପଚାର ଝର ପେ ଦେଇଥିଲୁ ମୋର ତହିଁ ।
ମନ୍ଦରେ ଶୁଢ଼ି ଅଇଲି ଯେ ଚେତନା ମୋର ନାହିଁ ॥
ମନ୍ଦରେ ପ୍ରବେଶ ମୁଁ ହୋଇଲି ଯେତେବେଳେ ।
ମନ ମୋ ବୁଡ଼ିଥିଲା ପଦ୍ମପାଦ ତଳେ । ୧୬ ।
ଏବେ ଏ ଆତ୍ମାକୁ ଲାଗୁଅଛି ଭୟେ ।
ଝର ଘୋର ବୋଲି ବୋଲିବେ ସଭିଏ । ୧୭ ।
ତୁମ୍ଭେ ମତ୍ତସିଂହ ମୁଁ ଯେ ଧରିଅଛି ଲାଞ୍ଜ ।
ନ ରଖି ତ ଯେବେ ପ୍ରଭୁ ତୁମ୍ଭଙ୍କୁ ସିନା ଲାଜ । ୧୮ ।
ମୁହିଁ ତ ମୋହମତେ ନ ଗଲି ଗୋସାଇଁ ।

ଲଙ୍କାକୁ ଘେନଗଲୁ ତୁମ୍ଭ ଚତ୍ତରେ ଦୟା ବହ । ୧୯ ।
ମଶା କେଡ଼େ ଜନ୍ତୁ ତାକୁ ଲଦଲ ପରବତ ।
ଏତେର ଶାସ୍ତି ଏବେ ମୋତେ ଦେଉଛ ନରନାଥ ।୨୦।
ଜଗତେ ଉପହାସ କରିବେଟି ସକଳ ।
ତୁମ୍ଭେ ମହାପ୍ରଭୁ ଯେବେ ପ୍ରତିକାର କର । ୨୧ ।
ହସି ଆଜ୍ଞା ଦେଲେ ତୁହୋ ଡରୁଛୁ କାହିଁକ ।
ଲଙ୍କା ବିଜେ କଥା ମିଛ ହୋଇବ ନାକ । ୨୨ ।
ଲଙ୍କା ବିଜେ କଥା ତୁ କହିବୁ ଯଥାର୍ଥ ।
ଯଥାର୍ଥ କଥାକୁ ହୋ ଆମ୍ଭର ସନମତ । ୨୩ ।
ଏଣୁ ସୁଜନେ ମୋହୋର କଥା ଶୁଣ ।
ପ୍ରତାପରୁଦ୍ର ଦେବରାଜ କଲେଟି କପଣ । ୨୪ ।
ଉପରର ଝର ଯହୁଁ ଭଣ୍ଡାରେ ହଜିଲା ।
ସଙ୍ଖଳା ପଡ଼ନ୍ତେ ଯେ ବୋଲଣା ପଡ଼ିଲା । ୨୫ ।
ମୂହିଁ ଯେ ନଦ୍ୟାଗତେ ମଠରେ ଶୋଇଥିଲି ।
ଯାହାନ୍ତ ଅବକାଶେ ଦର୍ଶନକୁ ଅଇଲି । ୨୬ ।
ସିଂହଦ୍ୱାରେ ଶୁଣିଲି ଭଣ୍ଡାରେ ନାହିଁ ଝର ।
ଦଣ୍ଡ ମଣ୍ଡ ହେଉଛନ୍ତ ପାଳ ପଡ଼ିଆସି । ୨୭ ।
ଦାସ ଯେ ବୈଷ୍ଣବ ଲେଙ୍କା ମୂଳେ ଧରି ।
ସମସ୍ତଙ୍କୁ ଆରତ ଲାଗୁଅଛୁ ଚୋରି । ୨୮ ।
ଏସନ ଶୁଣି ମୁଁ ଯେ ବଗିରଲି ଚଲେ ।

ଲଙ୍କା ବିଜେ ବେଳେ ଝର ଥିଲା ମୋର ହସ୍ତେ ।୨୯।
ସତ କି ସ୍ୱପନ ବୋଲି ମନରେ ବିଚାରିଲି ।
ମଠରେ ପ୍ରବେଶ ହୋଇ ଦେଖିଲି ଅଛି ଝର । ୩୦ ।
ତତକ୍ଷଣେ ଝର ଆଣି ଦେଲି ଯେ ଭଣ୍ଡାରେ ।
ଲୋକେ ଜଣାଇଲେ ତାହା ନୃପତି ଛାମୁରେ । ୩୧ ।
ଦୋହର ଝର ନେଇଥିଲେ ବଳରାମ ଦାସେ ।
ଶୁଣିଣ ନୃପତି ମୋତେ ହକାରିଲେ ପାଶେ । ୩୨ ।
ଖୁଣ୍ଟିଆ ଅଇଲା ବେଗେ ମୋତେ ଘେନିଗଲା ।
ବଳରାମ ଦାସେ ଅଇଲେ ବୋଲିଣ ବୋଇଲା । ୩୩ ।
ଦେଖିଣ ନୃପତି କୋପେଣ ଥରହର ।
ଅଧର କମ୍ପାଇଣ ଯେ ବୋଲଇ ଉତ୍ତର । ୩୪ ।
ରାଜା ପଚାରିଲେ ମହାନ୍ତ ପରି ତୁମ୍ଭେ ।
ମୋର ବିଦ୍ୟାରେ ଦାସେ ଥାଅ ବଡ଼ ଦମ୍ଭେ । ୩୫ ।
ବୈଷ୍ଣବ ପଣରେ ତୁମ୍ଭେ ଯେ ଧାର୍ମିକ ବୋଲାଅ ।
ଏତେବଡ଼ ଲୋକ ହୋଇ ଅନ୍ୟାୟକୁ ଯାଅ । ୩୬ ।
ପ୍ରଭୁ ଦ୍ରବ୍ୟ ବୋଲିଣ ଦାସେ ନ କଲ କମ୍ପା ଭୟେ ।
ଝର ଘେନିଗଲ ତୁମ୍ଭେ କେବଣ ଭରସାଏ । ୩୭ ।
ଯେବେ ନ ଅଣ୍ଟିଲା ଆମ୍ଭଙ୍କୁ ମାଗିବଟିକ ।
ଏତେ ଅନ୍ୟାୟ ତୁମ୍ଭେ କଲ ଯେ କାହିଁକି । ୩୮ ।
ମୁଁ ବୋଇଲି ମୁଁ ଯେ ମାଗିବି କାହାକୁ ।

ମାଗିଲେ ମାଗଇ ଏକା ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କୁ । ୩୯ ।
ଝର ପାଇଁ ନକ ଗୃେର ହୋଇଲଇଁ ମୁହିଁ ।
ପ୍ରଭୁଙ୍କ ଦ୍ରବ୍ୟ ସିନା ଥିଲା ମୋର ତହିଁ । ୪୦ ।
ରାଜା ବୋଇଲେ ଦାସେ ଦେଲ ଯେବେ ଝରେ ।
ଥିଲା ଯେ ଭୁମ୍ଭର ତହିଁ ନେଇଥିଲ କି ବଗୃର । ୪୧ ।
ମୁହିଁ ବୋଇଲି ସେ ଯେ ଅନେକ ବୃତ୍ତାନ୍ତ ।
ନ କହିଲେ ଯେ ପ୍ରତେ ନକ ଯିବୁ ନରନାଥ । ୪୨ ।
ପରମ ଦୁର୍ଲ୍ଲଭ ସେ କଥା କହିବାକୁ ।
ମନରେ ବଗୃରଥାଇଁ ଲଙ୍କା ଦେଖିବାକୁ । ୪୩ ।
ଭାବଗ୍ରାହିନାଥ ପ୍ରସନ୍ନ ବଦନେ ।
ହସି ଆଜ୍ଞା ଦେଲେ ହୋ କି ବଗୃର ମନେ । ୪୪ ।
ଲଙ୍କା ଦେଖିବାକୁ ଯେବେ ଶରଧା ତୋହୋର ଚିତ୍ତ ।
ଥିବ୍ରୁହିକ ଝର ଘେନ ଆମ୍ଭର ସଙ୍ଗତ । ୫୫ ।
ଏତେ ବୋଲି ମୁଣ୍ଡେ ମୋହୋର ଦେଲେକ ଶ୍ରୀହସ୍ତ ।
ଦେଖାଇବା ଲଙ୍କା ତୋତେ ବୋଇଲେ ଜଗନ୍ନାଥ ।୪୬
ନୀଳଗିରି ଜଗନ୍ନାଥ ଲୀଳାଭବରୁଁ ଯେ କରି ।
ନୟନ ଠାରି ଦେଲେ କରେ ଘେନ ଝରି । ୪୭ ।
ରହି ଝରେ ଘେନ ମୁଁ ଯେ ହୋଇଲି ଆନନ୍ଦ ।
ହସ୍ତେ ବନ୍ଦୀ କଲି ମୁହିଁ ଗଗନର ଚନ୍ଦ୍ର । ୪୮ ।
ମନେ ବଗୃରଲି ସ୍ୱାମୀ ଲଙ୍କାକୁ ନେବେ ମୋତେ ।

ସତ୍ୟବାଦୀ ପ୍ରଭୁ ଯେ ଯେ ଅଛନ୍ତି ଜଗନ୍ନାଥେ । ୪୯ ।
ଏହି କଥା ଜାଣି ମୁଁ ହୋଇଲି ମନେ ସୁଖୀ ।
ନମୀଷୀ ଲୋକଙ୍କ ସଖା ଅଛନ୍ତି ପଦ୍ମଆଖି । ୫୦ ।
ଧୂପ ଦୀପ ଆଲଢି ଅନ୍ତରେ ଗୋସାଇଁ ।
ଲଙ୍କାକୁ ବିଜେ କଲେ ଗହଣେ ଥିଲି ମୁହିଁ । ୫୧ ।
ରାଜା ବୋଇଲେ ଦାସେ କହିଲ ଆଚମ୍ବିତ ।
କି ପ୍ରକାରେ ଲଙ୍କାକୁ ବିଜୟେ ଜଗନ୍ନାଥ । ୫୨ ।
ଅସମ୍ଭବ ଭାଷା ତ କାହିଁ ଅବା ଲଙ୍କା ।
କେ କେ ଥିଲେ ଗହଣେ କି ଦାସେ ତୁମ୍ଭେ ଥିଲ ଏକା
ଶୁଣିବା ନୃପବର କାଲି ବଟ ଅବକାଶ ।
ଚତୁର୍ଦ୍ଦଶ ଲୋକେ ଥିଲେ ଯେବଣ ଯେବଣ ଦେଶ ॥
ତହିଁ ଅମ୍ଭେ ଜଗନ୍ନାଥଙ୍କ ଗହଣେ ଥିଲୁଁ ଯେସନେ ।
କହିଲେ ପ୍ରତେ ଯିବ ତୁମ୍ଭେ ଶୁଣସି ବିଦ୍ୟମାନେ । ୫୫ ।
ଅବକାଶର ବ୍ୟବସ୍ଥା ଶୁଣ ହୋ ନରନାଥ ।
ଲଙ୍କା କଟକାଇ ବାହୁଡ଼ା ବିଜୟେ ରଘୁନାଥ । ୫୬ ।
ବିଭୀଷଣ ରାଜା ମନରେ ହରଷ ବହୁଯେ ।
ଶ୍ରୀରାମଚନ୍ଦ୍ର ଠାକୁରଙ୍କ ଚରଣେ ବିନୟେ । ୫୭ ।
କରୁଣାସାଗର ସ୍ୱାମୀ ମହିମା ତୁମ୍ଭର ।
ଲଙ୍କାରେ ଯେବେ ମୋତେ କଲ ନୃପବର । ୫୮ ।
ଯହୁଁ ବୃକ୍ଷରୁ ପିତାକୁ ପୁତ୍ର ସ୍ନେହପ୍ରଦ ।

ଚନ୍ଦ୍ର କିରଣ ପ୍ରାପ୍ତେ ଶ୍ରୀରାମ ଆହ୍ଲାଦ । ୫୯ ।
କରୁଣାଜଳ ଦେଇ ସେ ବୃକ୍ଷ ଜୀଆଇବା ।
ସର୍ବଦିନେ ପ୍ରଭୁ ମୋତେ ଦର୍ଶନ ଦେଉଥିବା । ୬୦ ।
ଶୁଣି ଦାଶରଥି ବୋଇଲେ ବଚନ ।
ନିତ୍ୟ ନୀଳଗିରିରେ ପାଉଥିବୁ ଦର୍ଶନ । ୬୧ ।
ଦ୍ୱାଦଶ ଯାତ୍ରା ଅମୃତ ଦକ୍ଷିଣ ମୂର୍ତ୍ତି ବେଳେ ।
ତୁ ହୋ ବିଭୀଷଣେ ଦର୍ଶନ କରିବୁ ତେତେବେଳେ ॥
ଭାବକୁ ନିକଟ, ନୋହୁ ଅମ୍ଭେ ଦୂର ।
ଭାବର ସତ୍ୟ ଅମ୍ଭେ ଯିବୁଁ ତୋର ପୁର । ୬୩ ।
ଅମୋହ ଆଜ୍ଞା ଦେଇଥିଲେ ତେତେବେଳେ ।
ତେଣୁ କରି ଏବେ ଲଙ୍କାପୁରକୁ ବିଜେ କଲେ । ୬୪ ।
ପଞ୍ଚକତ ସେବାରେ ମୁହିଁ ଯେ ଥିଲି ଝର ଘେନି ।
ବାହୁଡ଼ି ଆସନ୍ତେ ବହୁତ ବେଳ ହୋଇଲା ରଜନୀ । ୬୫ ।
ଏଣୁ କରି ଝର ସିନା ରହିଲା ମୋର ମଠ ।
ଏ କଥାକୁ ନୃପତି ହୋ ତୁମ୍ଭେ ପାଉଅଛ ଦଣ୍ଡ । ୬୬ ।
ଅଶେଷ ମହିମା ଏ ଜଗନ୍ନାଥଙ୍କର ।
କହିଲେ ନ ସରଇ ନାହିଁ ନା ପଟାନ୍ତର । ୬୭ ।
ଭାବକୁ ନିକଟ ଏ ସର୍ବଠାରେ ଥାନ୍ତି ।
ଏ କଥାକୁ ନୃପତି ହୋ ନ ଯାଅ ମନେ ଭ୍ରାନ୍ତି । ୬୮ ।
ବିଶେଷ ଭୃତ୍ୟଙ୍କର ବୋଲ ନ କରନ୍ତି ନାହିଁ ।

ସତ୍ୟ କରିଥିଲେ ଯହିଁ ଲଙ୍କା ବଳେ ପାଇଁ । ୬୯ ।
ତୁମ୍ଭେ ଅବା ବୋଲିବ ସେ ତ୍ରେତୟା ଯୁଗର କାଳେ ।
ଏବେ କାହିଁ ପାଇଁ ଲଙ୍କା ପୁରକୁ ବଳେ କଲେ । ୭୦ ।
ସଚରାଚର ବ୍ରହ୍ମାଣ୍ଡ ଯାହାଙ୍କ ରଚନା ।
ତାହାଙ୍କର ଆଜ୍ଞା କେହୁ କରିବ ଖଣ୍ଡନା । ୭୧ ।
ଏଣୁକରି ସିନା ପ୍ରଭୁ ଭୃତ୍ୟଙ୍କର ଆୟତ୍ତ ।
ଭୃତ୍ୟଙ୍କର ଭୟପାତ୍ର ଏ ଅଟନ୍ତି ଜଗନ୍ନାଥ । ୭୨ ।
ଦାରିଦ୍ର ହରେ ଏ ଯେ ଦାରୁ କଳେବର ।
କରୁଣା-କୋମଳ ଦୁଷ୍ଟଜନଙ୍କୁ କଠୋର । ୭୩ ।
ଅମୃତ ଲାବଣ୍ୟରାଶି ବାଞ୍ଛା-କଳ୍ପତରୁ ।
ଭଗତ ମୂଳପଲ୍ଲବ ବେଢି ମହାମେରୁ । ୭୪ ।
ଶ୍ୟାମସୁନ୍ଦର ମୁଖ ନୀଳମେଘ ଆକାଶେ ।
ଚନ୍ଦ୍ର ସୂର୍ଯ୍ୟ ଉଦୟେ କି ପୂର୍ଣ୍ଣିମୀ ଦିନ ଶେଷେ । ୭୫ ।
ତେସନ ପଦ୍ମାନ୍ତର ଦିଶଇ ପଙ୍କଜଲୋଚନ ବୋଲି ।
କପାଳର ତିଳକ କି ଶୁଭ ଗ୍ରହଗଣ ଘେନି । ୭୬ ।
ସନ୍ଧ୍ୟା କାଳର ମେଘ ପ୍ରାୟେ ଅଧର ସୁରଙ୍ଗ ରେଖା ।
ମଧ୍ୟେ ନାସାଦନ୍ତ ମାଣିକ୍ୟ ପ୍ରାୟେ ରେଖା । ୭୭ ।
ସୃଷ୍ଟିର ନିମନ୍ତେ ସ୍ୱାମୀ ଶ୍ରୀ ଜଗନ୍ନାଥ ମୂରତି ।
ଅଇର ମିଶ୍ର ଉଦାସ ନିର୍ଗୁଣେ ପ୍ରବର୍ତ୍ତି । ୭୮ ।
ତ୍ରୈଲୋକ୍ୟ ଜନ ହୃଦେ ଅଙ୍ଗେ ଚତୁଃସମ ବୋଳି ।

ଆରତବାଣ ନମନ୍ତେ ବେନି ଭୂଜ ଅଛନ୍ତି ଯେ ଢୋଲ ॥
ତିନି ନେତ୍ର ପଡ଼ୁଛି ଶିରେ ଶ୍ରୀକାପଡ଼ା ଗଛ ।
ହିମୁଣ୍ଡି ଚୂଳ କରନ୍ତି ଅପୂର୍ବ ସୁନ୍ଦର ଦିଶି । ୮୦ ।
ଗଜମୋତି ଦ୍ରୋଣୀ ଅଲଙ୍କାର ରତ୍ନ ଝୁରି ।
ଶ୍ରବଣ ଶିଖରେ ଅବତଂସ କି ଯେସନ ମଙ୍ଗଳ ତାରି ॥
ଗଣ୍ଡସ୍ଥଳେ କୁଣ୍ଡଳ ବେନି ମଗରମୁଖ ସଞ୍ଚି ।
ଜାଣି ବିରାଜନ୍ତି ଏ କି ଗ୍ରହଗଣଙ୍କର ପଞ୍ଚି । ୮୨ ।
କଟୀରେ କଟିମେଖଳା ଯମଦାଢ଼ ବାମେ ।
ଶ୍ରୀଚରଣେ ତୋଡ଼ର ମଣି ରତ୍ନମୟ କମେ । ୮୩ ।
ଶ୍ରୀଭୂଜେ କଙ୍କଣ ବଳୟ ବାହୁଟି ମୁକୁତା ମାଳ ।
ବାମେ ଶଙ୍ଖ ଡାହାଣେ ଚକ୍ର ଦୁଷ୍ଟ ଦାନବନ୍ତ ଦଳ ॥
ଗଳାରେ ମୁକୁତାମାଳା କଟୀରେ କଟୀମେଖଳା ପଟଝୁମ୍ପା ।
ଦମ୍ଣା ମରୁଆମାଳ ବଉଳ ଯାଈ ଚମ୍ପା । ୮୪ ।
ସୁବେଶ ବେଶ ହୋଇ ଶ୍ରୀଜଗନ୍ନାଥ ଗୋସାଇଁ ।
ଧୂପ ଦୀପ ଆଳତି ଆଚମନ ଶେଷ ହୋଇ । ୮୬ ।
ଗରୁଡ଼ କରପତ୍ର ଯୋଡ଼ି ଶ୍ରୀମୁଖରେ ଜଣାଇ ।
ହେ ଦେବ ଅନନ୍ତ କୋଟିବ୍ରହ୍ମାଣ୍ଡ ଗୋସାଇଁ । ୮୭ ।
ହେ ଦେବ ଅନନ୍ତ କୋଟି ବ୍ରହ୍ମାଣ୍ଡର ନାଥ ।
ରାତ୍ର ପ୍ରହରେ ହୋଇଲା ଦ୍ୱାରେ ଉଭା ରଥ ।୮୮।

---

୮୧— ଯେସନ ମଙ୍ଗଳ ତାରା—ଶ ।

ଦର୍ଶନ କରିବେ ବୋଲି ସକଳ ସୁରମୁନି ।
ଦେବଗଣ ଗନ୍ଧର୍ବଗଣ ଯକ୍ଷଗଣମାନଙ୍କ ଘେନି । ୮୯ ।
ମହିମା ଦେବାଧିଦେବ ସ୍ୱାମୀ ରହି ଅଛନ୍ତି ଦ୍ୱାରସ୍ଥ ।
ଅଜ୍ଞା ହୋଇଲେ ଦର୍ଶନ କରିବେ ଏତେକ ଜଣାଇ
ଗରୁଡ଼ ପଛ ଘୁଞ୍ଚି । ୯୦ ।
ଆଚମନ ସାରି ଦେବ ଶ୍ରୀନିବାସେ ଶ୍ରୀମୁଖ ପୋଛି ହୋଇ
ଗରୁଡ଼କୁ ଅଜ୍ଞା ହୋଇଲା ହୋ ବଡ଼ ମଣ୍ଡାଅ ବେଗେ
ଯାଇଁ । ୯୧ ।
ସେଠାରେ ଅବକାଶ ହୋଇବ ସକଳ ଦେବତାଙ୍କର
ପାଇଁ ।
ବେଗେ ମଣ୍ଡାଅ ବଡ଼ ଯିବା ସଜ ହୋଇ । ୯୨ ।
ଆଜ୍ଞା ପ୍ରମାଣେ ଖଗପତି ମଣ୍ଡାଇଲେ ବଡ଼ ।
ମାର୍କଣ୍ଡେଶ୍ୱର ବହିଅଣି ପାଡ଼ିଲେ ରତ୍ନଖଟ । ୯୩ ।
ଯମେଶ୍ୱର ସୁପାତି ଶେଯ ଶୋଯାଇଲେ ନେଇ ।
ମୁଚୁଳାମାନ ତ ଘେନିଲା ଲୋକେଶ୍ୱର ଧାଇଁ । ୯୪ ।
କୃତ୍ତିବାସ ଭୁବନେଶ୍ୱର ଭୁଲ କରନ୍ତି ଶେଯ ।
ସେତୁବନ୍ଧ ରାମେଶ୍ୱର ସିଞ୍ଚନ୍ତି କର୍ପୂର ରଜ । ୯୫ ।
ତ୍ରିକାଳବାସୀ ହାଟକେଶ୍ୱର ବଟେଶ୍ୱର ବେନି ।
ଏମାନେ ଚନ୍ଦୁଆ ଟାଣନ୍ତି ପଞ୍ଚମୁଖ ତ୍ରିଲୋଚନଙ୍କୁ ଘେନି ॥

ପାରିଜପ ପାରେଶ୍ୱର ଶଶିଭୂଷଣ କପିଳେଶ୍ୱର ପଞ୍ଚୁରାମଙ୍କୁ
କେ ଘେନ ।
ବଟରେ ପାଏଡ଼ା ପାରନ୍ତି ଏ ମହାଲିଙ୍ଗ ମାନ ତ ଘେନ
କାମେଶ୍ୱର କୂର୍ମେଶ୍ୱର ବୈତରଣୀ ଆଖଣ୍ଡଳ ।
ଏମାନେ ରେଖ କରାଉଛନ୍ତି ଅସ୍ଥାନ ମଣ୍ଡଳ । ୯୮ ।
ପଶ୍ଚିମ ସମେଦା ବଦ୍ୟନାଥ ବରିହନାଥଙ୍କୁ ଘେନ ।
ଶ୍ମର ଗୃନ୍ଦୁଅ ଏନ୍ତୁ ଠାଣୁଛନ୍ତି ବେନ । ୯୯ ।
ହେମବନ୍ତେଶ୍ୱର କେଦାରେଶ୍ୱର ସପନେଶ୍ୱର ନନ୍ଦି-
କେଶ୍ୱର ଏ ଗୃହ ।
କୁଅସେଶ୍ୱର ଦକ୍ଷେଶ୍ୱର ନକେ କୁସୁମ ବୃଷ୍ଟି କର ॥
ଅଷ୍ଟ ବେତାଳ ଆଠ ଦାଣ୍ଡ ପହଁରନ୍ତି ।
ଜଳେଶ୍ୱର ଚନ୍ଦନେଶ୍ୱର ଚନ୍ଦନଛେରି ଦିଅନ୍ତି ।୧୦୧ ।
ଗଗନେ କର୍କୋଟକେଶ୍ୱର ଅଗୁରୁ ଧୂପ ସିଞ୍ଚ ।
ତ୍ରିବେଣୀଶ୍ୱର ମକରେଶ୍ୱର ଝାଡ଼ ଫୁଲମାନ ବାଞ୍ଛ ॥
ଚନ୍ଦ୍ରଭାଗା ତୀରେ ବ୍ରହ୍ମେଶ୍ୱର ବିଶ୍ୱେଶ୍ୱର ଦୁଇ ।
ପୂର୍ଣ୍ଣକୁମ୍ଭ ସ୍ଥାପି ଯେ ମଙ୍ଗଳ ଗୀତ ଗାଇ । ୧୦୩ ।
ପଟୋଆର ରେଖ କରାଉଛନ୍ତି ବେଦେରି ଗୋବନ୍ଦ ।
ଜମ୍ଭୁ ଜମ୍ଭୁ ଚଣ୍ଡ ପ୍ରଚଣ୍ଡ ପ୍ରସିଦ୍ଧି । ୧୦୪ ।
ଶୁକ ସନକ ଜନକ ନାରଦ ।
ବ୍ୟାସ ପରାଶର ଅଙ୍ଗିରା ପ୍ରହଲ୍ଲାଦ । ୧୦୫ ।

ଭୃଗୁ ବଶିଷ୍ଠ ଅଷ୍ଟାବକ୍ର ଅଗସ୍ତି ।
ପରେଚକ କୁମୂକ ରୋମାଞ୍ଚ ପଉଲସ୍ତି । ୧୦୬ ।
ହନୁମନ୍ତ ବାମଦେବ ଭାରଦ୍ଵାଜ କଣ୍ଡୁ ।
କଶିପୁ ଆଦ୍ଦ ମୁନିଙ୍କର ଜୟ ଜୟ ସମସ୍ତଙ୍କ ଭୁଣ୍ଡୁ ॥
କୈଳାସବାସୀ ଶିଖରେଶ୍ଵର ପଣ୍ଡୁ ଶୂଳପାଣି ।
ମଙ୍ଗଳ ଅଷ୍ଟକ ପଢ଼ନ୍ତ ଯେ ଶୁଭବେଳ ଘେନ ।୧୦୮।
ବୃହସ୍ପତିଙ୍କର ମୂଳେ ଅଠଷଠି ଘେନ ତାରାଗଣ ।
ଦ୍ଵାଦଶରାଶି କାଳବେଳ ଯୋଗଲଗ୍ନ କରଣ । ୧୦୯ ।
ନାରାୟଣ ତାରାସଙ୍ଗେ ସପତ ବ୍ରହ୍ମବେତ୍ତା ।
ସପ୍ତ ଆଭରଣ ବେଢ଼ି ଅନେକେ ଊର୍ଦ୍ଧ୍ୱରେତା ॥
ଧ୍ରୁବଚକ୍ର ବେଢ଼ିଣ ନଅ ବ୍ୟାକରଣ ।
ନିବୃତ ହୋଇଣ ଯେ କରନ୍ତି ଦର୍ଶନ । ୧୧୧ ।
ଚଉଦକୋଟି ଶିବଗଣ ଶଙ୍କର ସଙ୍ଗେ ।
ଭୂତ ପ୍ରେତ ପିଶାଚଗଣ କଙ୍କର ହୋଇଅଛନ୍ତି ଆଗେ ॥
ଛଡ଼ଋତୁ ଘେନିଣ ତହିଁ ମଳୟ ପବନ ।
ଅଣଚାଶ ଘେନିଣ ନଉଚେତ ଉଦ୍ୟାନ । ୧୧୩ ।
ଉର୍ବଶୀ ମୂଳେ ତହିଁ ଅଷ୍ଟ ଅପସରା ।
ଗାନ୍ଧାର ରାଗେ ଆଳାପ ନୃତ୍ୟକାରୀ । ୧୧୪ ।
ଇନ୍ଦ୍ର ସଙ୍ଗେ ତେତିଶ କୋଟି ଦେବତା ।

ହାହା ହୁହୁ ଗନ୍ଧର୍ବ ଦୁନ୍ଦୁଭି ବାଦ୍ୟମନ୍ତ୍ର । ୧୧୫ ।
ଆକାଶ ଗଙ୍ଗା ମୂଳେ ଅଲେଖ ନଦୀ ତୀର୍ଥ ।
ଶୂନ୍ୟ ଥାଇଁ ଜଳ ସଞ୍ଚରଇ ରୈବତ ପର୍ବତ । ୧୧୬ ।
ପାରଜାତକ ମାଳାଘେନ ନନ୍ଦନବନ ତୋଟାଳ ।
ଉଚ୍ଚୈଶ୍ରବା ହୟ ଘେନ ଗୋରେଅ କ୍ଷେତ୍ରପାଳ । ୧୧୭ ।
ଶଙ୍ଖନିଧି ପଦ୍ମନିଧି ଘେନ ବିଶ୍ୱକର୍ମା ସଙ୍ଗେ ।
ଅଷ୍ଟନିଧି ଘେନ ରତ୍ନାକର ଉଭା ଆଗେ । ୧୧୮ ।
ଶାରଳା ରଣ ବେତାଳ ଚଣ୍ଡୀ ଭଦ୍ର ଗୃଷ୍ଠେ ।
ରତ୍ନବର୍ଗ କବଚ୍ଛ ସେ ଅମରେ ସେ ଭାଟ । ୧୧୯ ।
ରସରେ ପୂର୍ବ ଯେ ବୟସରେ ପ୍ରଭା ।
ଗୁଣବନ୍ତ କୁଶଳ କ ସମୁଦ୍ରହିଁ ଅବା । ୧୨୦ ।
ମଳୟ ଗନ୍ଧ ଘେନ ମଲ୍ଲାର ଲକ୍ଷ୍ମଣ ।
ମୃଗନାଭି କସ୍ତୁରୀ ରଙ୍ଗନାଥ କରେ ଘେନଣ । ୧୨୧ ।
ଶୁକଚନ୍ଦ୍ରା ମଞ୍ଜିଷ୍ଠା ଗୃମର କରେ ଘେନ ।
ମହେନ୍ଦ୍ରତନୟା ଭୁଙ୍ଗେଶ୍ୱର ରଙ୍ଗେଶ୍ୱର ବେନ । ୧୨୨ ।
ଭଦ୍ରାକ୍ଷ ଜନର ସିଦ୍ଧ ଶଙ୍କର ନାରାୟଣ ।
ତାରାତନ ମୁକୁତାମାଳା ହସ୍ତରେ ଘେନଣ । ୧୨୩ ।
ପଦ୍ମନାଭ ପଦ୍ମିନୀ ଜମ୍ବୁନଦଲସି ।
ଦର୍ଶନେ ଲକ୍ଷ୍ମୀଙ୍କି ଆଲିଙ୍ଗନ କଲେ ଆସି । ୧୨୪ ।
ମର୍କତ ନୀଳ ଉଜ୍ଜ୍ୱଳ ପଦ୍ମରାଗ କେଶର ।

ମାଳା କଣ୍ଠରେ ଦେଇଣ ଯୋଡ଼ିଲେ ବେଢ଼ାକର ।୧୨୫।
ଶ୍ରୀନବର ଶ୍ରୀଧର ରଣଶ୍ରେଷ୍ଠ ବେହ୍ନ ।
ଅମରାବତୀ ଅଶୋକେଶ୍ୱର ଅମରେଶ୍ୱର ତନ । ୧୨୬ ।
ପଟ୍ଟୋଳଦେଶର ପଞ୍ଚଲିଙ୍ଗ ଗନ୍ଧଧୂପ ହସ୍ତେ ।
ମଲ୍ଲାର ଦେଶର ମଧୂକ ମଙ୍ଗଳ ଆରୋପଣ ଚିତେ ॥
ଗଣ୍ଡକୀ ନଦୀର ସୁବର୍ଣ୍ଣ ଦାନ୍, ବସ୍ତୁ ।
ରୈବତ ପର୍ବତର ନରସିଂହ ଘେନଛନ୍ତି କୁସୁମ ଦ୍ରୋଣରଧନୁ
ଚନ୍ଦ୍ରକେଳୀ କଟକରେ କପାଳଅ ବରଞ୍ଚି ।
କର୍ପୂର ଦାନ ଘେନ ହସ୍ତେ ଖଡ୍ଗ ବଞ୍ଚି । ୧୨୯ ।
ମଧୂବନ ମକରେଶ୍ୱର ବିଷ୍ଣୁପଦ ଶ୍ରୀହର ।
ମାନସରୋବର ହଂସ କନକ ଛତ୍ରଧର । ୧୩୦ ।
ସୁକୁମାର ବରଶିବ ଲଳତା ପାର୍ବତୀ ।
ସୁବର୍ଣ୍ଣ ପଦ୍ମମାଳ ଘେନ ହସ୍ତେ ଲକ୍ଷେକ ଯୁବତୀ ।୧୩୧।
ସିନ୍ଧୁ ଦେଶର କାମାକ୍ଷୀ କୁସୁମ ଚାମରନ୍ତ ଘେନ ।
ହସ୍ତିନୀ ଗୁପ୍ତେଶ୍ୱରୀ ମନ୍ତ୍ର ଉଚ୍ଚାର ଶିରେ କରବେନ ॥
ବାରୁଣ ହ୍ରଦର ଜଳେଶ୍ୱରୀ ମଚ୍ଛ ମୁଦ ଖଣ୍ଡା ।
କାମନ୍ତା କାମଚଣ୍ଡୀ ହସ୍ତରେ ଫୁଲମଣ୍ଡା । ୧୩୩ ।
କୁଶସ୍ଥଳୀ ଦେଶ ମଧୁବନ୍ତୀ ଦୃଶା ।
ବାଷଠି ଦେବୀ ଯାର ଆଜ୍ଞାରେ ପରତେଜା । ୧୩୪ ।
ଖେଚର ଦେଶର ଦେବୀ ମୋହିନୀ ମଡ଼ନୀ ।

କର୍ପୂର କସ୍ତୁରୀ ଯେହ୍ନୁ ଘେନଛନ୍ତି ବେନ । ୧୩୫ ।
କୋରଷ ଦେଶର କୋଠାରୀ ରଣଚଣ୍ଡୀ ମୂଳେ ।
ଚଉରାଶୀ ଚଣ୍ଡୀ ଅଛନ୍ତି ଯାହାଙ୍କର ଭୁଲେ । ୧୩୬ ।
ଘୋର ପର୍ବତ ତାରାଗୁଣୀ ଶଉରୀ ଖଣିଭଦ୍ରା ।
ଭଙ୍ଗଦେଶ ଧବଳୀଶ୍ୱର ମସ୍ତ୍ୟଦେଶ ମହାମୁଦ୍ରା । ୧୩୭ ।
ଗ୍ରାମ କୋଡଷପୁର ଦେବୀ ପଞ୍ଚମୁଖ ତାରା ।
ଇଳାବର୍ତ୍ତ ତ୍ରିପୁରା ହସ୍ତରେ ସୁଗନ୍ଧ ପୁଷ୍ପହାର । ୧୩୮ ।
ଗନ୍ଧର୍ବ ଦେଶର ଗନ୍ଧର୍ବୀ ହସ୍ତରେ ଅଚ୍ଛୁ ରବା ।
ପଞ୍ଚମ ରାଗେ ଆଲପନ୍ତି ଏ ପଞ୍ଚବର୍ଣ୍ଣ ଅବା । ୧୩୯ ।
ମନ୍ଦାର ଦେଶର ମୁକୁନ୍ଦାଚଣ୍ଡୀ ଉଗ୍ରକେତକୀ ବାସ ।
କଞ୍ଚନ ଭୁବନେଶ୍ୱରୀ କରେ ପୀତାମ୍ବର ବାସ । ୧୪୦ ।
ବ୍ରହ୍ମାବର୍ତ୍ତ ଦେଶର ଦେବୀ ଚର୍ମକେଶ୍ୱରୀ ଚାମୁଣ୍ଡା ।
ଚତୁର୍ବଦନ ଦେବୀ ହସ୍ତେ ଚନ୍ଦ୍ର ଧ୍ୱଜ ଖଣ୍ଡା । ୧୪୧ ।
ଅଙ୍ଗଦେଶ ଭଦ୍ରକାଳୀ ଜଇନ୍ତ୍ରା କଇନ୍ତ୍ରା ।
କଣ୍ଠେ କର୍ଦ୍ଦନ କାମାକ୍ଷୀ ଅଶୋକମାଳା ସୁମେଢା ।୧୪୨।
ରଙ୍ଗଭୂମି ଅମ୍ବିକା କାଳନ୍ଦୀ କେଭୁକା ।
ଭଇରବୀ ମୂଳେ ଛନ୍ତି ଅନେକ ଚଣ୍ଡିକା । ୧୪୩ ।
ଅଗ୍ନିକୋଣ ଜାଳାନ୍ଧରୀ ବାଷଠୀ ବେତାଳୀ ।
ସରୁପାଳ ବୃଦ୍ଧମାତା କରେ ଅର୍ଘ୍ୟସ୍ଥାଳୀ । ୧୪୪ ।
ଜଳନ୍ଧାରା ଅମାର୍ଗୀ ସସ୍ତିକମାଳା ଚକ୍ରେଶ୍ୱରୀ ।

ଦେବୀବର୍ଗ ଯେତେ ଏମାନେ ଛନ୍ତି ପଚ୍ଛୁଆଗ । ୧୪୫ ।
ଦକ୍ଷିଣ କୋଶଳ ନବଦୁର୍ଗା ନନ୍ଦକେଶ୍ୱର ଉଲୁନ୍ଥୀ ।
ମେଘମାଳାର ଅଳାପେ ମର୍ଦ୍ଦଳ ଯନ୍ତ୍ର ଝୁନ୍ଥି । ୧୪୬ । ।
ବିଦର୍ଭଦେଶର ଭବାନୀ ସିଂହନଗ୍ରୀ ମଲ୍ଲିକା ।
ତାମ୍ରଶୁଣି ମୂଳେ ଛନ୍ତି ଅଣ୍ଡିପୂର୍ଣ୍ଣି ଅମ୍ବିକା । ୧୪୭ ।
ବାଣରାଶି ବିଶାଳାକ୍ଷୀ ପ୍ରାଗର ଲଳିତା ।
ଦ୍ୱାଦଶ ବୈଷ୍ଣବୀ ଯେ ଭକ୍ତଜନ ହିତା । ୧୪୮ ।
ଚଉଷଠି ଯନ୍ତ୍ର ମନ୍ତ୍ର ସାର ଭୂଗରସ ।
ଜନ ଚଇତନ ସ୍ୱରୂପ ପ୍ରକାଶ । ୧୪୯ ।
ବୈଷ୍ଣବ ଧର୍ମ ଏମାନଙ୍କର ଆଶ୍ରମ ଶକତ ।
ଅନନ୍ତ କୋଟି ବୈଷ୍ଣବେ ଅଛନ୍ତି ନାନାଜାତ । ୧୫୦ ।
ଗଙ୍ଗା ଗୟା ଗୋଦାବରୀ କୃଷ୍ଣାବେଣୀ ଭାଗୀରଥୀ ।
ଗଣ୍ଡୁକୀଆଦି କରିଅଛନ୍ତି ସରଯୂ ସରସ୍ୱତୀ । ୧୫୧ ।
ଯମୁନା କାବେରୀ କଉଣ୍ଡିକୀ ଶକୁନ୍ତଳା ।
ନର୍ମଦା ସୁବର୍ଣ୍ଣରେଖା ତୁଙ୍ଗଭଦ୍ରା ବର୍ତ୍ତୁଳା । ୧୫୨ ।
ନିର୍ମଳା ନିତ୍ୟରୂପୀ ଚଳନ୍ତିଗଙ୍ଗା ପାତାଳଗଙ୍ଗା ସୁମତି
ବ୍ରାହ୍ମୀ ବୈତରଣୀ ମନାଗ୍ନି ଚନ୍ଦ୍ରୋଜ୍ୱଳା ସୁକାନ୍ତି ॥
ଋଷିକୋଇଲ୍ୟ ବ୍ରହ୍ମସୁତା ସାବନ୍ଦୀ ଗୋପୀଗଙ୍ଗା ।
ବିନ୍ଦୁସାଗର ଆଦି କରି ଅଠଷଠୀ କୋଟୀ ତୀର୍ଥମୂଳେ
ଫାଲ୍ଗୁନୀ ଚନ୍ଦ୍ରଭାଗା । ୧୫୪ ।

ଏମାନେ ସମସ୍ତେ ଦ୍ରବ୍ୟଗୁଧ ଘେନି ଅଛନ୍ତି ସେବା ଘେନି
ଗଙ୍ଗା କାଳିନ୍ଦୀ ଅଛନ୍ତି ହସ୍ତରେ ଚହଳର ଘେନି ॥
କଳପବୃଛ ବେଢ଼ି ଉଛେ ଶୋଭାପାଏ ।
ତଳେ ତରୁ ହିଞ୍ଚି ମୁନି ଗନ୍ଧଲେ କଳନା ନ ଯାଏ ॥
ବାଜଇ ଢୋଲ ଦମା ଝମକ ନିଶାଣ କୌତୂହଳ ଗାଢେ଼
ବଠମୂଳୁଁ ସମୁଦ୍ର ପରିଯନ୍ତେ ପଚୁଆର ପଡେ଼ । ୧୫୭ ।
ଦୁଇ ପାରୁଶେ ସୁରଗଣ ଉଭା ହୋଇଛନ୍ତି ।
ମଧ୍ୟରେ ଅପସ୍ବରୀ ବିଦ୍ୟାଧରୀ ନୃତ୍ୟ ପରବନ୍ଧେ ଗୀତ
ଗାବନ୍ତି । ୧୫୮ ।
ଅଶୀ ସହସ୍ର ଗନ୍ଧର୍ବ ଶଙ୍ଖ ଧ୍ୱନି କରେ ।
ବଠଅବକାଶ ଜଗନ୍ନାଥଙ୍କର ଜୟେ ଜୟେ ଛନିପୁରେ ॥
ବିଜେ ସଜାଉ ଯେ ବାଜନ୍ତି ମୁରୁଜ ।
ଶୁଣି ଚଉର୍ଦ୍ଦଶ ଲୋକେ ହୋଇଲେ ଉଚ୍ଛାହ । ୧୬୦ ।
ଏସନ ସମୟେ ଶ୍ରୀ ଜଗନ୍ନାଥ ପ୍ରଭୁ ବିଜେ କର ଅୟେ ।
ନବକୋଟି କାତ୍ୟାୟନୀ ହନୁଭ ଧରଣ ସଙ୍ଗତରେ ଯାଏଁ ॥
ଚଉଷଠି ଯୋଗିନୀ ତହିଁ ଦିଅନ୍ତି ହୁଳହୁଳି ।
ସପ୍ତମାତ୍ରୀ ସାତଭଏଣୀ ଅର୍ଘ୍ୟ ବନ୍ଦାପନ୍ତି ଢୋଳ । ୧୬୧ ।
ଖଟଣି ହାର ଦେବତାମାନେ ଖଟୁଅଛନ୍ତି ଚଉପାଶେ ।
ରତ୍ନ ପାଦୁକା ଚଢ଼ି ଶ୍ରୀ ଜଗନ୍ନାଥ ପ୍ରଭୁ ବିଜେ କର ଅସେ
ବଳଭଦ୍ରଙ୍କ କନ୍ଧେ ବାମଭୁଜ ଦେଇ ।

ଓଡ଼ିଶା ମାତା ଦୁର୍ଗାଙ୍କୁ କ କ କରି କଥା ଏକ କହୁ ॥
ସେ ପୁଣି ତାହାଙ୍କ ମୁଖ ବୁଲାଇ ଅଳପ ହସି ।
ଏସନ ସମୟେ ଶ୍ରୀଜଗନ୍ନାଥ ମହାପ୍ରଭୁ କଲା
ପାବଚ୍ଛେଣ ଦଶି । ୧୬୫ ।
ବାଣରସି ବିଶ୍ୱେଶ୍ୱର ଧରିଛନ୍ତି ଫୁଲଛଡ଼ୀ ।
ଶଙ୍ଖ ଚକ୍ର ଧରି ସୁଭଦ୍ରା ଅଛନ୍ତି ଦକ୍ଷିଣ କଡ଼ । ୧୬୬ ।
ହେମବନ୍ତ ପର୍ବତ କେଦାରେଶ୍ୱର କୁସୁମ ବୃଷ୍ଟି କରି ।
ଭାସ୍କର ତୀର୍ଥର କ୍ଷେତ୍ରପଦ୍ମ ଶ୍ରୀମୁଖକୁ ଦର୍ପଣ ଯେ ଧରି ॥
ନେପାଳ ନୀଳକଣ୍ଠେଶ୍ୱର ପୁଣି ବିଞ୍ଚଣୀ ବିଞ୍ଚନ୍ତି ଅନୁକ୍ଷଣ
ରତ୍ନ ଅଲଟ ଧରି ବିଞ୍ଚଇ ଶ୍ରୀମଲ୍ଲିକା ଅର୍ଜୁନ । ୧୬୮ ।
ତ୍ର୍ୟମ୍ବକ ଭାଏ ତାହାଁ ପଛ ପଛ ବୋଲେ ।
ବରେହା କୁରୁମ ଦୁହେଁ ଆଣେ ଆଣେ ବୋଇଲେ ।୧୬୯।
ଗୋମୁଖ କେଶବ ସଜ ଦୁହିଁ କରି ।
ହାତେ ଗଡ଼ୁ ଆରେକ ହାତେ ରତ୍ନଝରି । ୧୭୦ ।
ରତ୍ନ କଠାଉ ଘେନି ତେଲଙ୍ଗୀଶ୍ୱର ଧାଇଁ ।
ରତ୍ନ କଠାଉମାନ ଘେନି ନୟପଦ୍ଧ ଗୋଡ଼ାଇ ।୧୭୧।
କରାଳ ବାଲୁଙ୍କେଶ୍ୱର ହାତେ ଫୁଲଛଡ଼ି ।
ଗୋକର୍ଣ୍ଣେଶ୍ୱର ଗଡ଼ୁକେଶ୍ୱର ଚାମର ଘେନି ଚାଳନ୍ତି ।
ଦ୍ୱାଦଶ ମାଧବ ଧୂପକାଠି ଘେନି ଚଳଯାନ୍ତି ସଙ୍ଗେ ।
ଜ୍ୟୋତିର ନରସିଂହ ଛୁରୀ ଖଣ୍ଡା ଘେନି ଭାଇ ଆଗେ ॥

ସତ୍ୟବାଦୀ ଗୋପୀନାଥ ହସ୍ତେ ପଦ୍ମଫୁଲେ ।
ଅଲାଲନାଥ ହୋଣଭାର ଯେନ ସଙ୍ଗେ ଚଳେ ॥
ପ୍ରୟାଗ ମାଧବ ଗୟାର ଗଦାଧର ଦୁଇ ।
ସୁବର୍ଣ୍ଣ ବେତ ଧରି ମଣିମା ମଣିମା ଡାକ ଦେଇ ।୧୭୫।
ଯୁକେଷ୍ଟିଙ୍କ ଆଶ୍ରମର ଖିଷ୍ଣୁ ପଣ୍ଡରୀକ ।
ଏମାନେ ଅଗପଛ କରିଛନ୍ତି ଦେବଲୋକ । ୧୭୬ ।
ଅହୋବନ ନରସିଂହ ତାଠକେଶ୍ୱର ଦୁଇ ।
ପୁଷ୍ପ ଶୃମର ଯେନ ଯେ ଖଠନ୍ତି ବେନଭାଇ । ୧୭୭ ।
ବଦ୍ରିକା ଅଶ୍ରମର ଦୁଇ ଋଷି ନର ନାରାୟଣ ।
ଏ ଦୁହେଁ ଯେନଛନ୍ତି ବନ୍ଦାପନା ଉଆଣ । ୧୭୮ ।
ସିଂହାରବତୀ ପୁର କେଶବ ଲୋକନାଥ ବେନ ।
ଏ ଦୁହେଁ ଦୁଇପାଖେ ଅଛନ୍ତି ମୁକୁତା ଛତ୍ରଯେନ ॥
ହଡପାଶୁଣି ଯେନ ଜାମ୍ବବତୀ ବାଳୀ ।
ବଡ଼ଅ ଲାଗି କରିଅଛନ୍ତି ସାହେର ଦୁଲାଲୀ । ୧୮୦ ।
ପାନପିକ ଧରିବାକୁ ବିରଜା ଦେବୀ ନିକଟରେ ଥାଇ ।
ଗଣପତି କାର୍ତ୍ତିକେଶ୍ୱର ଦୁହେଁ ତାଳ ଧରି ଗୀତ ଗାଇ ॥
କାଶ୍ମଦେଶର କାମାକ୍ଷୀ ଆଳତୀ ବନ୍ଦାଇ ।
ଯାହାକୁ ଯଉଁ ଆଜ୍ଞା ହୁଅଇ ତାହା ବିମଳା ଜଣାଇ ॥
ଭଦ୍ରଗଡ଼ୁ ଯେନ ମହାମାଯ଼େ ସରସ୍ୱତୀଙ୍କର ସଙ୍ଗେ ।
ପଉହାସ ଲୁହାଲୁହି ହୁଅନ୍ତି ଦୁଇସଖୀ ଅନୁରାଗେ ॥

ଶାକମ୍ଭରୀ କାନ୍ତାଣୀ ଦୁର୍ଗେଶ୍ୱରୀ କାଳୀ ।
ରାମଚଣ୍ଡୀ କୋଠେଶ୍ୱରୀ ଭଗବତୀ ବାଶେଳୀ । ୧୮୪ ।
ହାଡ଼ୀ ମାଈ କୋଡ଼ମାଚଣ୍ଡୀ ବ୍ରହ୍ମାୟୈଣୀ ଇନ୍ଦ୍ରାକ୍ଷୀ ।
ସାବିତ୍ରୀ ଶାରଳାଚଣ୍ଡୀ ଜୀଉଁଛୀ । ୧୮୫ ।
ଅପରାଜିତା ରୂପାଈ ଚମ୍ପାଈ ପିଙ୍ଗଳା ।
ସାରକମା ମାରକମା ଭଗବତୀ ହେଙ୍ଗୁଳା । ୧୮୬ ।
କଳାପାଠୀ କାଳକାଈ କାଳରାତ୍ରୀ କାଳିକା ।
ପାଟେଳୀ ମାଧବେଶ୍ୱରୀ କଳାଶୁଣୀ ଗୃଧ୍ରକା । ୧୮୭ ।
ଛାୟା ମାୟା ବିଜୟା ଚଣ୍ଡଘଣ୍ଟକାରେଣୀ ।
କାଳଘଣ୍ଟ କାଳମୁଖୀ ଏ ସାତ ଭଯୈଣୀ । ୧୮୮ ।
ଇଚ୍ଛାଖାଈ ଅଷମୋହ୍ନି ଶୋଷିନୀ ପିଶାଚୁଈ ।
ଭୃଙ୍ଗଖାଈ ହେମା ଶାନ୍ତ ସର୍ପମୁଖୀ ଜାଗୁଲାଈ । ୧୮୯ ।
ହାଡ଼ବାଈ ସାମଲାଈ ସମସମୀ ସ୍ଥିତ ଅବଲା ।
ମହାସବାଣୀ ତାରଶୁଣୀ ବିନ୍ଧ୍ୟବାସିନୀ ମଙ୍ଗଳା । ୧୯୦
ସାରଙ୍ଗାଈ ନାରଙ୍ଗାଈ ସଙ୍ଖୋଈ ବିଙ୍ଖୋଈ ।
ଓଲମାଈ ପୋଲମାଈ କରଣାଈ ବରଣାଈ । ୧୯୧ ।
ରତ୍ନକାନ୍ତ ରତ୍ନମାଳା ଚତୁର୍ଭୁଜୀ ଜୀତାଈ ।
କବେଜାଈ କେଭୁକାଈ ରାବଣାଈ ମହାମାଈ ।୧୯୨।
ବାରଘଣ୍ଟା କାଳଭୁଣ୍ଡୀ ଡାକୁଣୀ ଡକଣୀ ।
ଅଇଲ୍ମଶୁଣୀ ତାରେଣୀ ଜାରେଣୀ ମାରେଣୀ । ୧୯୩ ।

ସପନାଚେଣ୍ଡି ନାରାୟଣୀ କନେକଣ୍ଠୀ ଦେବୀ ।
ଏ ଦେବୀମାନଙ୍କର ସଙ୍ଗତେ ଅଛନ୍ତି ଅନେକ ୨ ଦେବୀ ॥
ଏ ସମସ୍ତେ ନିସ୍ତରଲୁଁ ୨ ବୋଲି ଶ୍ରମର ଧରି ସେବା ।
ଅଷ୍ଟାଦଶ ମହାମାୟା ମୂଳେ ସମସ୍ତେ ହେ ସେବା ॥
ମହାକାଳ ଜାଡ଼ୁମଲ୍ଲ ମଲ୍ଲିନାମଲ୍ଲ ଶୂର ।
ଅଷ୍ଟାଦଶ ମୂଳେ ଏ ଦଣ୍ଡ ପଢ଼ିହାରୀ । ୧୯୭ ।
ଚଣ୍ଡେ ଆଲମ୍ବ ଧରି ଖଣ୍ଡେ ୨ ହୁରେ ରହି ।
ଚଉଷଠି ସିଦ୍ଧଙ୍କୁ ଉତରେ ପଶିବା ଆଜ୍ଞା ନାହିଁ ।୧୯୮।
ଏସନେକ ସମସ୍ତେ ଗନ୍ଧର୍ବ ପଚୁଆର ।
ଉତରଦ୍ୱାରୁ ପ୍ରଭୁ ହୋଇଲେ ବାହାର । ୧୯୯ ।
ଗନ୍ଧର୍ବ ଖଟଣିରେ ଯେତେ ଦେବାଦେବୀମାନେ ।
ଝୁଲା ବହୁତ ଚନ୍ଦ୍ରଉହ୍ନଆ ଧରି ଅଛନ୍ତି ଏମାନେ ॥
ହାକୋଲତ ହୋଇ ତହିଁ ଜୟ ଜୟ ବାଣୀ ଶୁଭେ ।
ଅପସରୀ କିନ୍ନରୀ ଗୀତଗାନ ରବେ । ୨୦୦ ।
ଦେଖି ବ୍ରହ୍ମରୁଦ୍ର କରୁଥିଲ ପକାୟେ ।
ପାଏପଡ ଶୋଇବାରେ ଅତ୍ୟନ୍ତ ମେଦନୀ ଶୋଭାପାଏ ।
ଆଜ୍ଞା ହୋଇଲା ହୋ ଉଠ ୨ ବୋଲି ବୀରଭଦ୍ର ଡାକେ
ଗୋବରାଜା ଡାକଦଅଲ ହେଲୁଁ ୨ ପଛଧୁଆଁ ଦେବଲୋକେ
ଦକ୍ଷିଣକୁ ମୁଖ କରି ଠାକୁରେ ବଳରାମଙ୍କୁ ଆଉଜି ।
ଲକ୍ଷ୍ମୀଙ୍କ ହସ୍ତରୁ ପ୍ରଭୁ କର୍ପୂର ବଡ଼ଆ ଭୁଞ୍ଜି । ୨୦୩ ।

ନିଦ୍ରୁତେ ହୋଇ ବ୍ରହ୍ମା ଉଭା ହୋଇଛନ୍ତି ।
ସୃଷ୍ଟିର ସକଳ କଥା ପ୍ରଭୁ ବ୍ରହ୍ମାଙ୍କୁ ପଚ୍ଚରନ୍ତି । ୨୦୪ ।
ଓଁକାର ଶବଦେ ବେନି କର ଯୋଡ଼ି ବ୍ରହ୍ମା ।
ଭୋ ଦେବ ଅନନ୍ତ କୋଟି ବ୍ରହ୍ମାଣ୍ଡର ନାଥ ମହିମା ୨ ॥
ଜୟ୨ ଆଦି ଅନାଦି ଅଦ୍ୟମିତ ନିର୍ମଳରୂପ ।
ଜୟ ଜୟ ଅନନ୍ତ ଅଲକ୍ଷିତ ସ୍ୱରୂପ । ୨୦୬ ।
ନିର୍ମଳ ସୂକ୍ଷ୍ମସ୍ୱରୂପ ଠୂଳ ଶୂନ୍ୟ ସର୍ବଦି ପରିପୂର୍ଣ୍ଣି ।
ନିର୍ମଳ ନିରାକାର ଅବୟେ ଅବର୍ଣ୍ଣି । ୨୦୭ ।
ନିର୍ମଳ ନିର୍ବିକଳ୍ପ ନୀଳ ଜଳଦ ଶ୍ୟାମ ।
ସମ୍ପୂର୍ଣ୍ଣି ସୁଧାପାନି ସର୍ବଆତ୍ମା ପୂର୍ଣ୍ଣି । ୨୦୮ ।
ଗ୍ୟାନ ଅଗ୍ୟାନ ଅଦେହି ଅପ୍ରମୟ ।
ଯାବତ ଲକ୍ଷଣ କରୁଣାହୃଦୟ । ୨୦୯ ।
ଅଭୟ ପତିତପାବନ ଭୀତି ଗଜମନ୍ତ୍ର ।
ଜୟ ଜୟ ପତିତ ପାବନ ଜଗନ୍ନାଥ । ୨୧୦ ।
ସୃଷ୍ଟିର ସକଳ ବାରତା ଯେ ଯହିଁରେ ଯାହା ।
ତୁମ୍ଭ ଆଜ୍ଞା ପ୍ରମାଣେ ମୁଁ ସର୍ଜନ କରଇଁ ତାହା । ୨୨୧ ।
ରଜ ତାମସ ସାତ୍ତ୍ୱିକ୍ୟ ଗୁଣ ଘେନି ।
ପଞ୍ଚଭୂତରୁ ସପ୍ତାବରଣ ଜୀବ ପରମ ଯେ ବେନି । ୨୧୨ ।
ନିର୍ଲେପ ନିରଞ୍ଜନ ପ୍ରକୃତି ପରେ ବାସ ।
ତୁମ୍ଭ ଆଜ୍ଞା ପ୍ରମାଣ ମୁଁ ସର୍ଜନା କରଇଁ ଚତୁର୍ଦ୍ଦଶ ॥

ସର୍ବଗୁଣେ ଯନ୍ତ୍ରିତ ସବୁ ତୁମ୍ଭର ଅମୃତ ।
ଅଧିକ ଲକ୍ଷ ଦେବାକୁ ମୁଁ ନୁହଇ ସାମରଥ । ୨୧୪ ।
ଏତେ ଜଣାଇ ତୁମ୍ଭୀ ହୋଇଲେ ପଦ୍ମଯୋନି ।
ଦରହସିତ ହୋଇଣ ହସିଲେ ଶ୍ରୀଜଗନ୍ନାଥ ସ୍ୱାମୀ ॥
ଏତେକ ଜଣାଇ ବ୍ରହ୍ମା ରହିଲେ ଗୃହମୁରେ ।
ସରସ୍ୱତୀ ଜଣାଇଲେ ଏମନ୍ତ ସମୟରେ । ୨୧୬ ।
ମହିମା ଦେବାଧିଦେବ ଶ୍ରୀ ଜଗନ୍ନାଥସ୍ୱାମୀ ।
କାଶୀଦେଶରେ ପ୍ରଭୁ ମୋହୋର ଜନ୍ମଭୂମି । ୨୧୭
ତହିଁର ନୃପତି ରାଜ୍ୟଭ୍ରଷ୍ଟ ହୋଇ ପଳାଇଣ ଅସି ।
ମୁହିଁ ତାକୁ ବୋଇଲି ହୋ ଭୟ ନ କର ଶ୍ରୀପୁରୁଷୋତ୍ତମେ
ଥା ବସି । ୨୧୮ ।
ଆଜକୁ ବାରବରଷ ହୋଇଲା ସେହୁ ଅଛୁ ରହି ।
ତୁମ୍ଭ ନାମ ଜପଇ ସେ ସିନ୍ଧୁକୂଳେ ଅନେକ ଦୁଃଖ ସହି ॥
ଆଜ୍ଞା ପାଇଲେ ନିଜରାଜ୍ୟ ପାଇବ ସେହୁ ରାଯେ ।
ତହିଁରେ ତେବେ ସେ ମୋହୋର ବଡ଼ପଣ ରହେ ॥
ଏହା ଶୁଣି ଠାକୁରେ ଠାରଲେ ଠାକୁରାଣୀଙ୍କି ।
ଏହାଙ୍କୁ ପଚାର କଥା କୋପ କରେ ସେ ନୃପତିକ ॥
ଜାଣିଣ ଶାରଦା ଦେବୀ ମହାଲକ୍ଷ୍ମୀ ବୋଲି ।
ମୋତେ କଥା ନ କହ ମାଏ ମୁଁ କଉଁ ଦୋଷ କଲି ॥
ବଡ଼ଅଥ ଯେ ମହାଲକ୍ଷ୍ମୀ ଲାଗି କରାଉଥିଲେ ।

ସରସ୍ୱତୀଙ୍କ ବଚନେ ସେ ସାବଧାନ ହୋଇଲେ ॥
ଅଚଳାଚଳନନ୍ଦନୀ ତୋଷ କରାଇ ଜମ୍ବୁବତୀ ବାଳୀ ।
ଏକ ଲଏ କରି ଡଲେ କଲେ ସାହେର ଭୁଲାଲି ।୨୨୪
ତ୍ରୈଲୋକ୍ୟ ଜନନୀ ଦେବୀ କରୁଣା ନୟନେ ।
ସରସ୍ୱତୀଙ୍କ ମୁଖ ଚାହିଁ ହସିଲେ ମନେ ମନେ । ୨୨୫ ।
ଚିତ୍ତରେ ବିଚାରିଲେ ତାର ଫେଡ଼ିବା ଦୁର୍ଗତି ।
ଅପରାଧକୁ ଦଣ୍ଡ ତ ପାଇଲା ନୃପତି । ୨୨୬ ।
ଏମନ୍ତ ବୋଲି ସନ୍ତୋଷେ ଚାହିଁଲେ ମହାମାୟେ ।
କର ଯୋଡ଼ି ଜଣାଇଲେ ଶାରଦାୟେ । ୨୨୭ ।
ତୁମ୍ଭେ ସଙ୍କେତ ବାହନ ଗୋ ମାୟା ପରିତ୍ୟାଗି ।
ଆମ୍ଭେମାନେ ସଂସାରେ ଅଛୁଁ ମାୟାମୋହ ଲାଗି । ୨୨୮
ତୁମ୍ଭେ ଯେ ଠାକୁରାଣୀ ଆମ୍ଭେ ତୁମ୍ଭର ଦାସୀ ।
ଦାସୀଙ୍କର ଦୋଷ ନ ଧର ଗୋ ପଦ୍ମବନବାସୀ ।୨୨୯।
ଜାଣି ନ ଜାଣି ଯେବେ ଭୃତ୍ୟ କରଇ ଦୋଷ ।
ସେ ଦୋଷ କ୍ଷମା ନ କର ଯେବେ ଧରିବା ମନେ
ରୋଷ । ୨୩୦ ।
ଭବ ବିରଞ୍ଚି ଯେ ଆଦି ସୁରନାଥ ।
ଏ କଷଣୁ ଫେଡ଼ିବାକୁ କେହି ନୋହିବେ ସାମରଥ ॥
ଏସନ ସମୟେ ଯେ ହେଙ୍ଗୁଳା ଦେବୀ ଥିଲେ ।
ସରସ୍ୱତୀଙ୍କର ପୃଷ୍ଠେ ଅର୍ଥେ ବଚନ କହିଲେ । ୨୩୧ ।

ଶୁଣିମା ଦେବୀ ଠାକୁରାଣୀ ସାବଧାନ ହୋଅ ।
ପ୍ରଭୁଙ୍କ ଆଜ୍ଞାପ୍ରମାଣେ ଭୃତ୍ୟଙ୍କୁ ଦୟା ବନ୍ଧ । ୨୩୩ ।
ପ୍ରପନ୍ନ ଜନଙ୍କର ଆରତ ଯନ୍ତୁଁ ହର ।
ଏଣୁ କରି ଭରସା କରି ଜଣାଇଲୁଁ ଈଶ୍ୱର । ୨୩୪ ।
ଯାଉ ସେ ନୃପତି ଏବେ ନିଜ ରାଜ୍ୟ ପାଉ ।
ଦାସୀଙ୍କର ବଡ଼ାଇ ମାଏ ଗୋ ରଖିବାକ ହୋଉ ॥
ଶୁଣି ଦେବୀ ମହାଲକ୍ଷ୍ମୀ ପରମ ସନ୍ତୋଷ ।
ହେଙ୍ଗୁଳା ମୁଖ ଗୃହିଁ ହୋଇଲେ ହସ ହସ । ୨୩୬ ।
ବୋଇଲେ ଏ ସଖି ରାଜା ବଡ଼ଇ ନିର୍ଦ୍ଦୟା ।
ଦୁଃଖିତଜନମାନଙ୍କୁ ସେ ନ କରଇ ଦୟା । ୨୩୭ ।
ଏହାଙ୍କ ରାଜ୍ୟେ ଅତିଥି ନ କରନ୍ତି ପୂଜା ।
ନ ଦେଇ ନ ଖାଇ ସେ ସମସ୍ତେ ମୁହଁବୁଜା । ୨୩୮ ।
ଯେବଣ ରାଜ୍ୟେ ଅତିଥି ହୁଅନ୍ତି ବିମନ ।
ଇନ୍ଦ୍ର ନ ପାଳଇ ଦରିଦ୍ର ହୁଅନ୍ତି ତହିଁ ଜନ । ୨୩୯।
ତୁମ୍ଭେ ଯେ କହିଲ ଏ ରାଜାଙ୍କୁ ଦୟା କର ।
ଧର୍ମ ଛାଡ଼ିଲା ରାଜା ସମ୍ପତ୍ତି ଅଧିକାର । ୨୪୦ ।
ଏଥିରେ ଥିଲେ ବଡ଼ ବଡ଼ ରାଜାମାନେ ।
ତାହାଙ୍କର ଚରିତ କି ଶୁଣିନାହିଁ କର୍ଣ୍ଣେ । ୨୪୧ ।
ଶିବି ରାଜା ଥିଲେ ଯେ ସତ୍ୟବାଦୀ ପଣେ ।
ହରିଶ୍ଚନ୍ଦ୍ର ନଉକର ବିକେ ବ୍ରାହ୍ମଣଙ୍କର କାରଣେ ।୨୪୨।

ଧର୍ମ ନିମନ୍ତେ ବିକ୍ରୟ କଲେ ପୁତ୍ର ଭାରିଜା ।
ସ୍ୱଦେହେ ବିଷ୍ଣୁ ଲୋକ ପାଇଲେ ସେହୁ ରାଜା । ୧୪୩ ।
ଏହିମତେ ଯେତେ ଲୋକ କରନ୍ତି ଆଚରଣ ।
ପଡ଼ଇ ବିଘ୍ନମାନ ତାଙ୍କୁ ବହୁତ କଷଣ । ୧୪୪ ।
ଧର୍ମ ଥିଲା ଲୋକଙ୍କୁ ଧର୍ମ କରଇ ପାର ।
ଅଧର୍ମୀ ଲୋକମାନଙ୍କୁ ନାହିଁ ନା ପ୍ରତିକାର । ୧୪୫ ।
ଧର୍ମ ଯେ ରହିଛି ସଚରାଚର ପୃଥୀ ।
ସକ୍ଷି ଧର୍ମ ଥିଲା ଲୋକଙ୍କର ମୁହିଁଟି ହୁଅଇ ସାକ୍ଷୀ ।୧୪୬
ଧର୍ମ ଥିଲା ଲୋକ ଅଜୟେ କରାଇ ଜୟେ ।
ଜଳେ ସ୍ଥଳେ ଅନଳେ ତାଙ୍କୁ ନାହିଁ କିଛି ଭୟେ ॥
ସତ୍ୟବ୍ରତ ରାଜା ଥିଲା ଧର୍ମ ଆଶ୍ରା କଲା ।
ତେଡ଼େ ପ୍ରଳୟ ବାଧା କିଛିହିଁ ନ ବାଧିଲା । ୧୪୮ ।
ସାନ ବଡ଼ ନାହିଁ ଯେ ଧର୍ମ ଆଶ୍ରିତଙ୍କୁ ।
ଯେ ଆଶ୍ରେ କରଇ ଧର୍ମ ମୁଁ ରଖଇ ତାହାଙ୍କୁ । ୧୪୯ ।
ହେଙ୍ଗୁଲା କହିଲେ ଏ ରାଜାର ପ୍ରସ୍ତାପ ।
ବହୁତ ଅଧର୍ମ ଏ ମୋତେ କରାଇଲା ତାପ । ୧୫୦ ।
ଏବେ ତୁମ୍ଭେ ତ କହିଲ ପ୍ରଭୁଙ୍କର ଆଜ୍ଞା ହୋଇଲା ।
ଯାଉ ସେ ନୃପତି କଥା ଭଲ ଗୋ ହୋଇଲା । ୧୫୧ ।
ଯାଉ ସେ ନୃପତି ଏବେ ନିଜ ରାଜ୍ୟ ପାଉ ।
ଏବେ ହୋ ଦୋଷ କଲେଟି ମୁଁ ନ ସହିଇ ଆଉ ॥

ଦୁଃଖି ଜନମାନଙ୍କୁ ଚିତ୍ତରେ ଦୟା ଥିବ ।
ବସ୍ତୁ ଅଶେଷ କରି ପ୍ରଜାମାନନ୍ତ ପାଳିବ । ୨୫୩ ।
ଗୋରୁ ବିପ୍ର ଅତିଥି ଦେବ ଶିବ ପୂଜା ।
ଏମନ୍ତ ହେଉ ଥିଲେ ନିଷ୍ଟିନ୍ତ ହୋନ୍ତି ରାଜା । ୨୫୪ ।
ହେଙ୍ଗୁଳା କହିଲେ ଯେ ମହିମା ତୁମ୍ଭର ।
ମେଲାଣି ହୋଇ ସେ ରାଜା ଯାଉ ନିଜ ପୁର । ୨୫୫ ।
ତସଣେ ପରମଲକ୍ଷ୍ମୀ ପରମ ସନ୍ତୋଷ ।
କଟାକ୍ଷ ମାତ୍ରେ ଗୃହିଁଲେ ରାଜା ପାଇଲା ନିଜ ଦେଶ ॥
ଇନ୍ଦ୍ରର ଭୁବନ କୁବେର ବାରଗ୍ରସ୍ତି ।
ଲକ୍ଷ୍ମୀଙ୍କ ଅନୁଜ୍ଞାରେ ତୋର ଫିଟିଲା ଦୁର୍ଗତି । ୨୫୬ ।
ଏମନ୍ତେ ସେ ଦୁଃଖିଜନମାନଙ୍କର ବାରତା ।
ଅନ୍ତର୍ଯ୍ୟାମୀ ନାଥ ଫେଡ଼ିନ୍ତି ତନପୁର ଲୋକଙ୍କର
ଚିନ୍ତା । ୨୫୮ ।
ତନପୁର ଲୋକ ରହିଲେ ସେବାରେ ।
ଯାହାଙ୍କୁ ଯେଉଁ ଆଜ୍ଞା ସେ ରହିଲେ ସେହିଠାରେ ॥
ବିଭୀଷଣ ବଚନ ପ୍ରଭୁ ମନରେ ସୁମରି ।
ଗରୁଡ଼ ପିଠିରେ ପ୍ରଭୁ ସଧୀରେ ବିଜେ କରି । ୨୬୦ ।
ମୋତେ ଆଜ୍ଞା ଦେଲେ ହୋ ଦେଖିବୁ ଆଜ ଲଙ୍କା ।
ଥିବୁଟି କି ଗହଣରେ ମନରେ ନ କରିବୁ ଶଙ୍କା ।୨୬୧।
ମୁହିଁ ଯାଉଁ ଯାଉଁ ବାଟରେ ବିଗୃଗଲି ଚଢ଼େ ।

ମୋହୋ ସର ଭାଗ୍ୟବନ୍ତ ନାହିଁ ନା ଜଗତେ । ୨୬୨ ।
ମନେ ବିଚାରଇ ମୋହୋ ସମସର ନାହିଁ କେହି ।
ମୁହିଁ ଲଙ୍କାକୁ ଯାଉଅଛି ମାନବ ଦେହ ବହି । ୨୬୩ ।
ଗରବ ନ ସହନ୍ତି ପ୍ରଭୁ ପଡ଼ିଲି ଜଳେ ଯାଇଁ ।
ଡ଼ାକଇ ରଖ ରଖ ମୋତେ ଜଗନ୍ନାଥ ଗୋସାଇଁ ॥
ହସି ଆଜ୍ଞା ଦେଲେ ଆସ ଆସ ବୋଲି ।
ଶତ୍ରଣ ସମ୍ଭାଳି ଲଙ୍କାପୁରକୁ ମୁହିଁ ଗଲି । ୨୬୫ ।
ପ୍ରବେଶ ବିଭୀଷଣ ଦର୍ଶନ ଆସି କଲେ ।
ଦେବାଙ୍ଗବସ୍ତ୍ର କଳା ମଲ୍ଲୀ ନିଉଛାଳି କଲେ । ୨୬୬ ।
ନାନା ବର୍ଣ୍ଣି ଧରଇ ସେ ଲଙ୍କା ପୁଷ୍ପ ଗୋଟି ।
ନୂଆ ନବୀନ ବାସ ମଲମନ ଛୁଟି । ୨୬୭ ।
ତାରିବଳ ମୁକୁତା ଝଲକତ ପେଣ୍ଡା ।
ବିଭୀଷଣ ହସ୍ତରେ ପ୍ରଭୁ ଦେଲେ ଛୁରୀ ଖଣ୍ଡା । ୨୬୮ ।
ମୁହିଁ ମନେ ବିଚାରଇ ନୀଳଗିରି ସ୍ୱାମୀ ।
ଯାହାଙ୍କ ପ୍ରସାଦେ ମୁଁ ଦେଖିଲି ଲଙ୍କା ଭୂମି । ୨୬୯ ।
ମୁକୁତା ମାଳ ମଲ୍ଲୀ ଆଣି ବାନ୍ଧିଲି ପଟୁକାରେ ।
ଭ୍ରମିଲି ଲଙ୍କାପୁର ମୁଁ ଦେଖିଲି ଘରେ । ୨୭୦ ।
କି ପଟାନ୍ତର ଦେବା ସେ ପୁରର ମହିମା ।
ଆଜ୍ଞା ପ୍ରମାଣେ ଯାହା ନିର୍ମାଣିଅଛି ବିଶ୍ୱକର୍ମା । ୨୭୧ ।
କି ପଟାନ୍ତର ଦେବା ସେ ବିସ୍ତୃର ମନ୍ଦିର ।

ବିଷ୍ଣୁର ସେବକ ଯହିଁ ଅଛନ୍ତି ନିରନ୍ତର । ୨୭୨ ।
ଚର୍ମ ନୟନ ମୋର କଲ ଧନ୍ୟ ଧନ୍ୟ ।
ଶୁଣିଲି ଯାହା କର୍ଣ୍ଣେ ଦେଖିଲି ନୟନ । ୨୭୩ ।
ମୁହିଁ ଅବା କେଡ଼େ ଜନ୍ତୁ ପିମ୍ପୁଡ଼ିର ମତ ।
ସୃଷ୍ଟିମୂନେ ଝାଳ ଲୋଡ଼ଇ ଅମୋହ ପର୍ବତ । ୨୭୪ ।
ମୋହୋଠାରୁ ବଡ ମୋହୋଠାରୁ କାହିଁ ଭୁକ୍ତ ।
କାହିଁ ଅବା କେତେ ଜନ୍ତୁ ହୋଇନାହାନ୍ତି ମୋକ୍ଷ ॥
ଏହି ଜଗନ୍ନାଥଙ୍କର ଯେମନ୍ତ ମହିମା ।
ନ ସହନ୍ତି ଗର୍ବ ସେ ଭାଙ୍ଗନ୍ତି ଗାରିମା । ୨୭୬ ।
ଏମନ୍ତେ ଆସୁ ଆସୁ ହୋଇଲା ଉତ୍ତର ।
ଶରୀରରେ ଅଳସ ଧାରିଲା ମୋହୋର । ୨୭୭ ।
ପ୍ରଭୁର କୃପାଯେ ମୋହୋର ଦେହ ସିନା ।
ଭ୍ରମନ୍ତେ ସୁଖବେଳେ ବୁଡ଼ିଲା ଚେତନା । ୨୭୮ ।
ଯିବାର ବେଳେ ଜଣାଇଁ ଲଙ୍କାକୁ ମୁହିଁ ଗଲି ।
ଜନ୍ମର ସୁଫଳ ବିଭୀଷଣଙ୍କୁ ଦେଖିଲି । ୨୭୯ ।
ଅନେକ ଜନ୍ମେ ମୁଁ କରିଥିଲି ତପସ୍ୟା ।
ନୀଳଗିରିନାଥ ମୋର ପୂରାଇଲେ ଆଶା । ୨୮୦ ।
ପ୍ରଭୁଗୁଣ ଗୁଣି ଦେହେ ଅଚେତ ହୋଇଲି ।
ଉଭୟ ଲୋକ ଆଉ କିଛିହିଁ ନ ଜାଣିଲି । ୨୮୧ ।
ଭବଗ୍ରାହୀ ନାଥ ମୋତେ ଅଣିଲେ ଯେତେବେଳେ ।

ମଠରେ ପ୍ରବେଶ ମୁଁ ନ ଜାଣଇ ଭୋଳେ । ୧୮୨ ।
ପ୍ରଭୁଦ୍ରବ୍ୟ ଏବେ ଅଛୁ ମୋରଠାରେ ।
ସମ୍ମୁଖେ ନ ଗଲେ ଜଣାଅ ସ୍ତମ୍ଭରେ । ୧୮୩ ।
ଡାଗ୍ବଳ ମୁକୁତା ଅଛୁ କଲା ମଲ୍ଲୀ ।
ପାଦାର୍ଘ୍ୟ ବେଳେ ଯାହା କଲେ ଜଉଷ୍ଠଳ । ୧୮୪ ।
ଛନ ଭୁବନରେ ଯେତେକ ପଦାର୍ଥ ।
ସବୁ ଭୋଗ କରନ୍ତି ସେ ପ୍ରଭୁ ଜଗନ୍ନାଥ । ୧୮୫ ।
ଏହୁ ଜଗନ୍ନାଥନ୍ତି ସର୍ବରୂପଧାରୀ ।
ଧର୍ମରକ୍ଷା ଅର୍ଥେ ଏଦାରୁ କଳେବର ଧରି । ୧୮୬ ।
ଶରଣସୋଦର ଯେ ଉଡୁଅଛୁ ବାନା ।
ଆରତଜନମାନଙ୍କୁ ଅଟନ୍ତି ବ୍ରଜସେହ୍ନା । ୧୮୭ ।
ଦୂରେ ଥାଇଁ ଚିନ୍ତା କଲେ ନିକଟେହିଁ ଥାନ୍ତି ।
ବଡକୁଳ ନ ବାଛନ୍ତି ଜାତି ଏ ଅଜାତି । ୧୮୮ ।
ଏହୁ ମହିଁମା ଶୁଣି ସିନା ଭରସା ମୁଁ କଲି ।
ମନ ବୁଦ୍ଧି ବଳ ତାଙ୍କର କୋପୃର ହୋଇଲି । ୧୮୯ ।
ଜନ୍ମେ ଜନ୍ମେ ମୁହିଁ ଯେ ଶ୍ରୀହରିର ଦାସ ।
ଶ୍ରୀଅଙ୍ଗ ତୁଳସୀ ଯେବେ ପାଇବ ଅବଶେଷ । ୧୯୦ ।
ଏଣୁ କରି ପ୍ରଭୁ ମୋତେ କରନ୍ତୁ ସୁଦୟା ।
ଶ୍ରୀଜଗନ୍ନାଥ ମହାପ୍ରଭୁ ମୋତେ ନ କରନ୍ତୁ ମାୟା ॥
ବ୍ରହ୍ମା ରୁଦ୍ର ଇନ୍ଦ୍ର ଯେ ଯାହାଙ୍କୁ ଭାବୁ ।

ନୀଳଗିରି ନାଥ ମୋହୋର ସିନା ସବୁ । ୨୯୨ ।
ତାହାଙ୍କ ଦର୍ଶନେ ମୁହିଁ ସବୁ ପାସୋରଇଁ ।
ଚିତ୍ତ ବନ୍ଦୀ କଲେ କାହିଁ ନ ପାରଇ ଯାଇଁ । ୨୯୩ ।
ଅଠାରେ ଯେସନ ପକ୍ଷୀ ମଧୁରେ ଟି ମାଛି ।
କାହିଁ ନ ଯାଇଣ କ୍ଷଣେ ନ ପାରଇଁ ମୂର୍ଚ୍ଛି । ୨୯୪ ।
ଯେମନ୍ତ ମନ୍ତ୍ରୌଷଧି କରି ଅଛନ୍ତି ଯାହା ।
ଅନ୍ୟ କଥାକୁ ନ ବଳନ୍ତି ସୋରେହା ।୨୯୫।
ଭାସି ଯାଉଥିଲି ଭବ-ସାଗର ଜଲେ ।
ଈଶ୍ବର ଆଣି ମୋତେ ଲଗାଇଲେ କୂଳେ । ୨୯୬ ।
ବିଜେକୁଟି ମୋହୋର କର୍ମର ଅଯୁକ୍ତ ।
ଦୈଶାମୂଲେ ଅସି ହୋଇଲି ପରାପତ । ୨୯୭ ।
ଷଠ ଅବକାଶ ଏ ଭୃତ୍ୟ ଜନଙ୍କ ବିଶ୍ବାସ ।
ଶ୍ରବଣ ମାତ୍ରକେ ନ ଲାଗଇ କାଳଦଣ୍ଡ ଫାଶ । ୨୯୮ ।
ମନଠାରୁ ଆଉ ତ ସଂସାରେ ବଡ ନାହିଁ ।
ମୋହର ମନ ବନ୍ଦୀକଲେ ନୀଳଗିରିସାଇଁ । ୨୯୯ ।
ଏଣୁ ମୁଁ କର୍ମ ଧର୍ମ ନ ଜାଣଇଁ କିଛି ।
ତୀର୍ଥବ୍ରତ ଆଦି କରି ପକାଇଲି ଲେଛି । ୩୦୦ ।
ଶ୍ରୀଜଗନ୍ନାଥ କୃପାରୁ ଦେଖିଲି ପଠୂଆର ।
ଥୋକାଏ କହିଲି ଯେ ରହିଲା ଅପାର । ୩୦୧ ।
ଏମନ୍ତ ସପ୍ତଘଡ଼ି ହୋଇଲାକ ନିଶି ।

ବାହୁଡା ବିଜୟେ ପ୍ରଭୁ ନୀଳଗିରିବାସୀ । ୩୦୨ ।
ଦକ୍ଷିଣଦ୍ୱାର ବାଟେ ଦେଉଳେ କଲେ ବିଜେ ।
ଦୁନ୍ଦୁଭି ମହୁରି ଢୋଲ ଶଙ୍ଖ ବାଜେ । ୩୦୩ ।
ଜଗମୋହନ ଘରେ ରହିଲେ ପାଲଙ୍କ ।
ପଟୁଆରେ ରହିଛନ୍ତି ଦେବତା ତେତିଶ କୋଟି । ୩୦୪ ।
ଯେ ଯାହାର ମନ ବାଞ୍ଛାରେ ହୋଇଲେ ମେଲାଣି ।
ହସି ହସ୍ତ ଠାକୁରେ ଠାରି ଦେଲେ ପୁଣି । ୩୦୫ ।
ଏମନ୍ତେ ନିଅବକାଶେ ବିଜୟ ପ୍ରଭୁ କଲେ ।
କମଳାଙ୍କ ପରିବାର ସନ୍ନିଧେ ଖଟିଲେ । ୩୦୬ ।
ନିଦ୍ରା ପହୁଡ ସାରି ହୋଇଲେ ଅବକାଶ ।
ସମସ୍ତ ଭୃତ୍ୟମାନେ ହୋଇଲେ ପରବେଶ । ୩୦୭ ।
ପାହାନ୍ତି ଅବକାଶେ ଫିଟିଲା କବାଟ ।
ନ ପାଇଲେ ରହିଛି ପଡିଲା ଏତେ ହଟ । ୩୦୮ ।
ଏବେ ହୋ ମନକୁ ତୁମ୍ଭେ ନ ଯାଅ ପରତେ ।
ସବୁରି ଷଡ଼ଯନ୍ତ୍ର ଏ ପ୍ରଭୁ ଜଗନ୍ନାଥେ । ୩୦୯ ।
ରାଜା ବୋଇଲେ ଦାସେ ସବୁକଥା ସତ ।
ସବୁଙ୍କର ଷଡ଼ଯନ୍ତ୍ର ଏ ପ୍ରଭୁ ଜଗନ୍ନାଥ । ୩୧୦ ।
ତୁମ୍ଭେ ଲଙ୍କାକୁ ଯାଇ ପାର ସ୍ୱର୍ଗହିଁ ପାତାଳ ।
ସବୁଠାରେ ଥାଅ ତୁମ୍ଭେ ଜଗନ୍ନାଥଙ୍କର ମେଳ । ୩୧୧ ।
ରଜନୀ ପାହିବାରେ ସୁଫଳ ହୋଇଲା ଆଜ ଦିନ ।

ଶୁଣିଲୁଁ ଯେତେ ଚରିତ ଧନ୍ୟ ଆମ୍ଭର ଜୀବନ । ୩୧୬ ।
ଦେବାଙ୍ଗ ବସ୍ତ୍ର କଳାମଲ୍ଲୀ ମୁକୁତା ମାଳ ଆଣିବାକୁ ହୋଉ
ତାହା ଦେଖି ଆମ୍ଭର କଳୁଷ କ୍ଷୟ ଯାଉ । ୩୧୪ ।
ଗନ୍ତା ପଟୁକାରେ ସେ ବନ୍ଦ ହୋଇଥିଲା ।
ଦେଖିଣ ନୃପବର ବୋଇଲେ ଆମ୍ଭର କଳୁଷ କ୍ଷୟ ଗଲା ।
ହସ୍ତରେ ଘେନିଣ ତାହା ଭଣ୍ଡାରେ ଥୁଆଇଲେ ।
ସଭା ସେନାପତିମାନ ସମସ୍ତେ ଦେଖିଲେ । ୩୧୫ ।
ମୁହିଁ ଦର୍ଶନ କଲି ତାହାଙ୍କର ଭୁଲେ ।
ଶ୍ରୀଜଗନ୍ନାଥ ମହାପ୍ରଭୁ ମୋତେ ଅନାଇଁ ହସିଲେ ॥
ହସିବାର ମରମକଥା ମନ ସେ ଜାଣଇ ।
ଏଣୁ ମୁଁ ଇନ୍ଦ୍ର ପଦକୁ ତୁଚ୍ଛପ୍ରାୟେ ମଣଇଁ । ୩୧୭ ।
ଆତ୍ମାର ବଲ୍ଲଭ ମୋ ହୋଇ ପ୍ରାଣେର ପଞ୍ଚଭୂତ ।
ଅଦୃଷ୍ଟ ଇଷ୍ଟବର ମୋର ପ୍ରଭୁ ଜଗନ୍ନାଥ । ୩୧୮ ।
ଦୁର୍ଦ୍ଦଣ୍ଡପଣ କାଟି ସେ ଆପୁତ୍ର କଲେ ମୋତେ ।
ଏଣୁ ଅନ୍ୟକଥାକୁ ନ ଭାଳେ ମୋର ଚିତ୍ତେ । ୩୧୯ ।
ଯହିଁ ଯେତେ ଲୋକ ଅଛନ୍ତି ସବୁହୁଁ ବଡ଼ ବାଛି ।
ତ୍ରୈଲୋକ୍ୟ ଯାକରୁ ମୁହିଁ ଅଧିକଇଁ ଲେଛି ॥
ଏତେବଡ଼ ପ୍ରତ୍ୟକ୍ଷ ଯେ କଉଁଠାରେ ଅଛି ।
ଉତଷ୍ଟ ଉଦ୍ଭଣ ଭକ୍ତି ମୁଣ୍ଡରେ ହାତ ପୋଛି । ୩୨୧ ।
ରତ୍ନାକର ଉତ୍ତରେ ଷଷ୍ଠ ତରୁବର ।

ମୂଳେଣ ପ୍ରାସାଦ ଯହିଁ ସୁସଞ୍ଝ ସୁନ୍ଦର । ୩୨୨ ।
ମଞ୍ଝକଇଁ ସୁସଞ୍ଝ ଯେ ବ୍ରହ୍ମବୃକ୍ଷର ଗନ୍ଧ ।
ବ୍ରହ୍ମାଣ୍ଡ ମେରୁଦଣ୍ଡ କଏ କଳ୍ପତରୁ ଅଜ । ୩୨୩ ।
ଅ[illegible]ମାଦ୍ଧ ଶୂନ୍ୟେ ବଜସ୍ୱେ ପ୍ରସାଦ ବୃକ୍ଷରୂପୀ ।
ପ୍ରକୃତ ଯେନଣି ସାତ ବଲ ଅଛି ବ୍ୟାପି । ୩୨୪ ।
ଋକ ଯଜୁ ସାମ ଅଥର୍ବ ଗୃର ତାଳ ।
ଦଯ୍ୟାସତ ଶାନ୍ତ ପତ୍ର ମୂଳ ନୀଳାଚଳ । ୩୨୫ ।
ପାତାଳ ଶିକଳ ଯେ ବାସୁକ ନାମେ ଅହି ।
ସତ ରଜ ତମ ଯେ ଅନନ୍ତ ଛନ୍ଦ ପାଇଁ । ୩୨୬ ।
ଉଇବତ ପର୍ବତ କ ଗଢ଼ ପଡ଼ୁଅଛି ମେରୁ ।
ବ୍ରହ୍ମଜାତଙ୍କାର୍ କ ମହାଶମ୍ଭୁ ଅବା ଧରୁ । ୩୨୭ ।
ବିଶ୍ୱକର୍ମା ନାମେ ତାହା ଗଢ଼ିଛି ବନ୍ଧାଣି ।
ଅଚର୍ମିତ ଯନ୍ତ୍ର କ ଏ କାମକୁ ନଶାଣି । ୩୨୮ ।
କରୁଣା କରମଙ୍ଗା କ ଦଶଇ ଅଜସ୍ରେ ଗିର ।
ଅଷ୍ଟାଙ୍ଗ ଯୋଗମୁଦ୍ରା କ ଗଢ଼ିଲା ଯହିଁକର । ୩୨୯ ।
ସହସ୍ରଦଳ କମଳ କ ଓଲଟି ଅଛି ଫୁଟି ।
କ ଅବା ଗିଁଆନ ଧ୍ୟାନ ଶୂନ୍ୟକୁ ମନ ଭେଟି । ୩୩୦ ।
କେଉର କଳସ କଳକଳା କ ନନଇ ଭ୍ରସଲ ।
ମରକତ କାନ୍ତି କସେ ମଧୁପାନେ ଧୀର । ୩୩୧ ।
ପକ୍ଷୀଡେର ଅଛୁ ନାମ ତାର ଚକ୍ର ।

ଦୂଖଫଳ ଧ୍ୱଂସନକୁ ପ୍ରଭୁ ଧୃତ ବକ୍ର । ୩୩୨ ।
ଜଗତ ପିତା ପଣେ ବାନ୍ଧଇ ଖାଉନେତ ।
ଭବସାଗରକୁ ଥଳ କଏ ଠାରୁଅଚ୍ଛୁ ହାତ । ୩୩୩ ।
ଏଣୁକର ବାନା ଯାର ଉଡ଼ଇ ମନ୍ଦମନ୍ଦ ।
ପ୍ରତେ ନ କରଇ ଯେ ଶୂନ୍ୟରେ ଦଅଇ ପାଦ । ୩୩୪ ।
ପରମ ମଙ୍ଗଳ ଯେ ପାଠଣା ମୃତ୍ୟୁଞ୍ଜୟେ ।
କାଳକଣ୍ଠ ବିଦାରଛି ଦେଉଳର ପ୍ରାୟେ । ୩୩୫ ।
ଖଗେଶ୍ୱର ନାମେ ତହିଁ ଅଛଇ ପାଠବାର ।
ପୂର୍ଣ୍ଣାନନ୍ଦ ବ୍ରହ୍ମ ଯହିଁ ରାଜାଧିରାଜ ସ୍ୱାମୀ । ୩୩୬ ।
ଜଗତର ଆତ୍ମା ଏ ଅଟଇ ଜଗନ୍ନାଥ ।
ଅମୋଘ ପୂର୍ଣ୍ଣ ବିଜୟେ କ ଅବ୍ୟୟ ଅଚ୍ୟୁତ ।୩୩୭।
କୁଦଶା ନାଶ କର ସୁଦଶା ନାମେ କଢ଼ି ।
କୀର୍ତ୍ତି ବ୍ରହ୍ମ ପରଯନ୍ତେ ଯଉଁଠାରୁ ଗତି । ୩୩୮ ।
ବାଞ୍ଛା ସିଦ୍ଧ ପୁଷ୍ପ ଯହିଁ ବସଇ ଚତୁର୍ଦ୍ଦିଶେ ।
ଧର୍ମ ଅର୍ଥ କାମ ମୋକ୍ଷ ଫଳ ପାତ ଦଶେ । ୩୩୯ ।
ରତ୍ନ ସିଂହାସନ ଉପରେ ଚକା ଅପସର ।
ଚଳେଣ ସମ୍ମୁଖେ ଯହିଁ ଅଶେଷ ଈଶ୍ୱର । ୩୪୦ ।
ଶିରେ ସୁବର୍ଣ୍ଣ ଚୂଳ ଶୋହଇ ବଳୟା କେତକୀ ।
ରତ୍ନପତ କୋଦଣ୍ଡ କାଣ୍ଡ ଦେବ ଗଞ୍ଜୁ । ୩୪୧ ।
କପୋଳର ଚତା କ ଶୁକ୍ର ରବ ଶଶୀ ।

କଳାମଧ୍ୟେ ଶକ୍ତୁଳୀ କି ନୟନ ମିଶାମିଶି । ୩୪୨ ।
ଅଳକା ବେଷ୍ଟିତ ମଣିମୁକୁତାର ଝରା ।
କରୁଣା ଝରି ଝରି କିଏ ବରଷଇ ଅମୃତ ଯେ ଧାରା ॥
ନୀଳମଣି ଶ୍ରୀମୁଖ କି ନିର୍ମଳ ଶୁଦ୍ଧଜଳ ।
ନୟନ ବେନି ଘୂର୍ଣ୍ଣ୍ୟ ନାଳ ପଙ୍କଜ ଭ୍ରସଳ । ୩୪୪ ।
ମଧୁର ମୁରଲୀ କିଏ ମନୋହର ନାସା ।
ମନୋରଥ ପୂର୍ଣ୍ଣ କର କି ପୂରାଇବାର ଆଶା । ୩୪୫
ସାରଙ୍ଗ ବିମ୍ବାଧର ମନ୍ଦ ମନ୍ଦ ହାସେ ।
ରତ୍ନ ଓଡଆଣୀ ଶୋହେ କଟିତଟେ ପୀତବାସେ ॥
ଚନ୍ଦନ ଜରଜର ହୃଦୟ ମାଳମାନ ।
ବିପୁଳ ଭୁଜତଳେ ଶରଣ ସଦନ । ୩୪୭ ।
ନିରେଖ ଜନମାନଙ୍କର ଆରତ ଯହିଁ ପିଠି ।
ସୁଘଟଣ ପୃଥୁଳ କି ବଳଣ ବଇଠି । ୩୪୮ ।
ଏହିରୂପ ଚହ୍ନି ଜନ୍ମେ ଜନ୍ମେ ମନ ଥାଇ ।
ଯହିଁ ଥିଲେ ମୋତେ ନିରତେ ଏହି ରୂପ ଦିଶଇ ।୩୪୯।
ପ୍ରକୃତ ଭୁଲାଇଲା ମୋର ମନ କଲେ ସ୍ଥିର ।
ଶୟନେ ସ୍ୱପନେ ମାତେ ଦିଶିଲା ନୀଳଗିରି । ୩୫୦ ।
ଏଣୁ ମୁଁ କର୍ମ ଧର୍ମ କିଛିହିଁ ନଜାଣଇ ।
ଅଳସିଆ କର୍ମରଦ୍ୱାରେ ଗଙ୍ଗା ଗଲେ ବହି । ୩୫୧।
ସୁଜ୍ଞଜନମାନେ ନ ଧର ମୋର ଦୋଷ ।

ଶ୍ରୀ ଜଗନ୍ନାଥଶରଣ ମୁଁ ବଳରାମ ଦାସ । ୩୫୨ ।
ବଳରାମ ଦାସ କହିଲେ ବିଶେଷି ।
ପ୍ରତାପରୁଦ୍ର ରାଜା ଶୁଣିଣ ପ୍ରଶଂସି । ୩୫୩ ।
ସୁଜ୍ଞଜନମାନେ ନ ଧର ମୋର ଦୋଷ ।
ଶ୍ରୀଜଗନ୍ନାଥଶରଣ ମୁଁ ବଳରାମ ଦାସ । ୩୫୪ ।



# ଟୀକା

୨ । କୁଶପାଣି—ବ୍ରହ୍ମା । ୩ । ଶୂଳପାଣି – ମହାଦେବ

୪ । ରତ୍ନାକର-ନନ୍ଦନୀ – ଲକ୍ଷ୍ମୀ । ୫ । କ୍ଷତ୍ରିବର କଣ୍ଠକେ—ପୂର୍ବାରେ ।

୧୧ । କଣ୍ଠକାଇ—ଅବରୋଧ କର । ୨୫ । ସଙ୍ଗୋଲା—ଖୋଜା ।

୮୧ । ଦ୍ରୋଣୀ—ନୌକାକୃତି ଅଳଙ୍କାର ବିଶେଷ । ବିରଞ୍ଚି—ବ୍ରହ୍ମା

୮୩ । ଛୋଡ଼ର—ପାଦର ବଳା । ପାଦଭୂଷଣ ବିଶେଷ ।

୯୩ । ଖଗପତି – କୃଷ୍ଣ । ୯ ୯ ।ସମେହା – ଛମୁଆ ।
ପଶ୍ଚିମ ସମେହା—ପଶ୍ଚିମ ଦିଗର ଛମୁଆ ବା ପ୍ରତିନିଧି ।

୧୧୩ । ନଉଚେତ ଉଦାନ—ବାୟୁ ବିଶେଷ ।

୧୨୪ । ଜମ୍ବୁନଦଲସି—ସୁନାପର ସୁନ୍ଦର ।

୧୭୦ । ସଜାଉ—ବାଦ୍ୟ ବିଶେଷ ।

୧୭୪ । ଦ୍ରୋଣ—ଶରମୁଣ୍ଡି ।

୨୦୭ । ଅଦ୍ୟମିତ ନିର୍ମଳରୂପ—( ଅଦ୍ୟମିତ ? ) ସଦାସର୍ବଦା
ଝଟକୁଥିବା ରୂପ ।

୨୧୫ । ପଦ୍ମଯୋନି—ବ୍ରହ୍ମା ।

୨୨୫ । ସାହେର ଦୁଲାଳୀ—ଲକ୍ଷ୍ମୀ । ସାହେର—ସାଗର ।

୨୩୧ । ଭବ—ମହାଦେବ । ବିରଞ୍ଚି—ବ୍ରହ୍ମା ।

୨୩୪ । ପ୍ରପନ୍ନଜନ—ବିପଦରେ ପଡ଼ି ଘାଣ୍ଟି ହେଉଥିବା ଲୋକ ।

୨୫୭ । ବାରସ୍ଥତୀ—ସ୍ୱର୍ଗ ।

୩୨୩ । ଅଜ—ଯେ କାହାଠାରୁ ଜାତ ହୋଇ ନାହିଁ ।

୩୩୧ । କେଉର ( କେୟୂର ) —ବାହୁଭୂଷଣ ବିଶେଷ
ଭ୍ରସଲ—ଭଅଁର ।

# ବକ୍ତବ୍ୟ

ବ୍ୟକ୍ତିଗତ ନାନା ଅସୁବିଧା ବଶତଃ ନିଜେ ପ୍ରୁଫ୍ ଦେଖିବାର ସୁଯୋଗ ଘଣ୍ଟ ନ ଥିବାରୁ ବହୁ-ଅବକାଶ ଭୁଲ୍ୟା କ୍ଷୁଦ୍ର ପୁସ୍ତିକାରେ ମଧ୍ୟ ଜନ୍ମମୁଦ୍ରିତ ଶୋଚନୀୟ ପ୍ରମାଦମାନ ପ୍ରବେଶ ଲାଭ କରିଅଛି । ପାଠକ ପାଠିକାମାନଙ୍କୁ ସାନୁନୟ ଅନୁରୋଧ ଏହି ଶୁଦ୍ଧିପତ୍ରାନୁଯାୟୀ ପ୍ରମାଦମାନ ପ୍ରଥମେ ସଂଶୋଧନ କରି ନେଇ ପୁସ୍ତକ ପାଠ କରିବେ ଓ ଏ ପତ୍ରଖଣ୍ଡ ପୁସ୍ତକରୁ ଅପସାରିତ କରିଦେବେ । ଇତି ।

ଶ୍ରୀ ବିଚ୍ଛନ୍ଦ ଚରଣ ପଟ୍ଟନାୟକ ବି, ଏ,
ପ୍ରାଚୀ ସମିତି ସମ୍ପାଦକ

— — —

| ପୃଷ୍ଠା | ପଦ—ପଂକ୍ତି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୨ | ୧୩—୧ | ଦିଗ୍‌ବେରେନ୍ଦ୍ର | ଦିଗ୍‌ବରେନ୍ଦ୍ର |
| ୮ | ୭୨—୨ | ଘଷ ପାତ୍ର | ଘଷା ପାତ୍ର |
| ୮ | ୭୩—୧ | ଦ୍ୱତେ | ହ୍ୱତେ |
| ୮ | ୭୫—୧ | ନିଳମେଘ | ନୀଳମେଘ |
| ୯ | ୮୬—୨ | ଦପ | ଦୀପ |
| ୧୦ | ୯୦—୧ | ବୀରଶ୍ରୀ | ବିରଶ୍ରୀ |
| ୧୧ | ୯୭—୧ | ପାର୍ଶ୍ୱଦପ | ପାର୍ଶ୍ୱଦୀପ |
| ୧୧ | ୯୭—୨ | ବଟରେ | ବାଟରେ |
| ୧୨ | ୧୧୧—୨ | ନିବୃତ | ନିଭୃତ |
| ୧୨ | ୧୦୭—୨ | ପରେଚକ | ରେଚକ |
| ୧୨ | ୧୧୦—୨ | ଅନକେ | ଅନେକ |
| ୧୨ | ୧୪୭—୧ | ଭ୍ରୁକୁଟୀ | ଭ୍ରୂକୁଟି |
| ୧୨ | ୧୪୭—୨ | ଚାର୍ ଶୁଣି<br>ଅର୍ଣ୍ଣପୂର୍ଣ୍ଣା | ଚାରିଶୁଣୀ<br>ଅନ୍ନପୂର୍ଣ୍ଣା |
| ୧୭ | ୧୫୭—୨ | ବଟମୂର୍ତ୍ତି | ବଟ ମୂର୍ତ୍ତି |
| ୧୯ | ୧୮୦—୧ | ଦଡ଼ପାଶୁଣି | ଦଡ଼ପାଶୁଣୀ |
| ୨୦ | ୧୯୧—୧ | କରଣାଇ<br>ବରଣାଇ | କରୁଣାଇ<br>ବରୁଣାଇ |
| ୨୩ | ୨୧୮—୨ | ଶ୍ରୀପୁରୁଷୋତମେ | ଶ୍ରୀପୁରୁଷୋତ୍ତମେ |
| ୨୪ | ୨୨୯—୨ | ଗୋ ପଦ୍ମବନବାସୀ | ଗୋ ପଦ୍ମବନବାସି |
| ୨୬ | ୨୪୭—୨ | ମୂର୍ଦ୍ଧିଷ୍ଟ | ମୁର୍ହିଷ୍ଟ |
| ୨୮ | ୨୬୨—୨ | ମଲମନ | ମଲମାନ |
| ୨୭ | ୨୬୯—୨ | ଜନ୍ମଭ | ଜନ୍ମର |
| ୩୦ | ୨୮୭—୨ | ବ୍ରଜସେଦ୍ଧା | ବଜ୍ରସେଧା |
| ୩୪ | ୩୨୩—୧ | ଗଜ | ଖଜ |
| ୩୪ | ୩୨୩—୨ | ମେର୍ଦଣ୍ଡ | ମେରୁଦଣ୍ଡ |
| ୩୬ | ୩୪୨—୧ | କପୋଲରେ | କପାଳରେ |
| ୩୬ | ୩୪୮—୧ | ମୀରେଖ<br>ଆରତ | ନିରେଖ<br>ଆରତ ଦରେ |